# ବିଷୟ ସୂଚୀ

ପୃଷ୍ଠା

# କୋରିଆରେ କୁରୁକ୍ଷେତ୍ର

କ୍ଷୁଦ୍ର କୋରିଅ ଅଜ ଜଗତର ବିରାଟ ସମସ୍ୟା । କାଲିର ଅଜଣା ଅଶୁଣା କୋରିଅ ଦେଶ ଅଜ ସମସ୍ତଙ୍କ ମୁହଁରେ ଅଲୋଚନାର ବସ୍ତୁ । ବିଶାଳ ଏସିଆ ମହାଦେଶର ଏକ ସୁଦୂର କୋଣରେ ଅବସ୍ଥିତ ଏହି କ୍ଷୁଦ୍ର ଦେଶ ଭିତରେ ଯେଉଁ ଯୁଦ୍ଧ ନିଅଁ ଜଳୁଛି, ତାର ଉତ୍ତାପ ଦୁନିଅର ସବୁ ଅଞ୍ଚଳର ଜନତାକୁ ବାଧୁଛି । ସାରା ଦୁନିଅର ଅଖି ଅଜ କୋରିଅ ଉପରେ । ବଳିକୁ ବାମନ ପରି ଜଳଜଳ କୋରିଅର କୃଷକ ବାହିନୀ ଅମେରିକାର ଡ଼ୋଲର ସୈନ୍ୟମାନଙ୍କୁ ଅପଦସ୍ଥ କରୁଛି । କୋରିଅବାସୀଙ୍କର ବୀରତ୍ୱ, ଶକ୍ତି ସମସ୍ତଙ୍କ ଚକ୍ଷୁ ଝଲସାଇ ଦେଉଛି । ଅଜ କୋରିଅ ସମସ୍ୟା ଅନ୍ତର୍ଜାତିକ ସମସ୍ୟା ହୋଇଛି । କୋରିଅ ଯୁଦ୍ଧ ପୃଥିବୀ ମହାଯୁଦ୍ଧର ଅଦିପର୍ବ କି ନା, ଏହି ପ୍ରଶ୍ନ ସାରା ଦୁନିଅକୁ ଅନ୍ଦୋଳିତ କରୁଛି ।

କୋରିଅର ଉତ୍ତରପୂର୍ବରେ ସୋଭିଏଟ୍ ରୁଷର ସାଇବେରିଅ ଅଞ୍ଚଳ, ଉତ୍ତରପଶ୍ଚିମରେ ସଦ୍ୟମୁକ୍ତ ଜାଗ୍ରତ ଚୀନର ମାଞ୍ଚୁରିଅ ପ୍ରଦେଶ, ଦକ୍ଷିଣ ପୂର୍ବରେ ଅମେରିକା ଅଧିକୃତ ଶକ୍ତିଶାଳୀ ଜାପାନ ଦ୍ୱୀପ, ଏବଂ ଦକ୍ଷିଣରେ ପ୍ରଶାନ୍ତ ମହାସାଗର । ଏହି ଭୌଗୋଳିକ ଅବସ୍ଥିତି କୋରିଅ ଦେଶର ଗୁରୁତ୍ୱ ବହୁଗୁଣ ବଢ଼ାଇଦେଇଛି ।

ଅତୀତରେ ସାମ୍ରାଜ୍ୟବାଦୀ ଜାପାନ ନିଜର ଚୀନ-ଅଭିଯାନ ସହଜ ଓ ସୁଗମ କରିବାପାଇଁ ଆଗରୁ କୋରିଆକୁ ଦଖଲ କରି ନେଇଥିଲା । କୋରିଆ ମାଞ୍ଚୁରିଆର ପ୍ରବେଶ-ଦ୍ୱାର । କୋରିଆ ବିଜେତା ପକ୍ଷରେ ମାଞ୍ଚୁରିଆ ଦଖଲ କରିବା ସହଜସାଧ୍ୟ ।

ଆଜିର ଅନ୍ତର୍ଜାତିକ ପରିସ୍ଥିତି କୋରିଆର ଭୌଗୋଳିକ ଅବସ୍ଥାନର ଗୁରୁତ୍ୱ ବିଶେଷଭାବରେ ବଢ଼ାଇ ଦେଇଛି । ବର୍ତ୍ତମାନ ଆମେରିକାର ଶାସକଗୋଷ୍ଠୀ ପ୍ରଶାନ୍ତ ମହାସାଗରକୁ ନିଜର ସଂପତ୍ତି, ଏକ 'ଆମେରିକାନ୍ ହ୍ରଦ' ଭାବରେ ଦେଖିବା ଆରମ୍ଭ କରିଛନ୍ତି । ପୂର୍ବେ ଜାପାନ ଅଧୀନରେ ଥିବା ପ୍ରଶାନ୍ତ ମହାସାଗରର ସମସ୍ତ ଦ୍ୱୀପ ଆଜି ଆମେରିକାର ନୂଆଘାଟି । ଜାପାନକୁ ଏକ ଶକ୍ତିଶାଳୀ ସାମରିକ ଘାଟି ଭାବରେ ବ୍ୟବହାର କରିବାର ଆଶା ଓ ବିଶ୍ୱାସ ଆମେରିକା ପୋଷଣକରୁଛି । ଏ ଦିଗରେ ଆମେରିକାର ଆୟୋଜନ ମଧ୍ୟ ବହୁଦୂର ଆଗେଇଗଲାଣି ।

ଆମେରିକା ବହୁ ଆଶା କରିଥିଲା, ଚ୍ୟାଙ୍ଗ୍‌କାଇଶେକ୍ ବିଶାଳ ଚୀନ-ଦେଶରେ ନିଜର ପ୍ରଭୁତ୍ୱ ବିସ୍ତାର କରିପାରିବ । ଏଥିପାଇଁ ଚ୍ୟାଙ୍ଗ୍‌କାଇଶେକ୍ ଆମେରିକାଠାରୁ ଅଜସ୍ର ଧନ, ପ୍ରଚୁର ଅସ୍ତ୍ରଶସ୍ତ୍ର ଏବଂ ସାମରିକ ପରାମର୍ଶ ପାଇଥିଲା । କିନ୍ତୁ ଚ୍ୟାଙ୍ଗ୍ ଚୀନର ମୁକ୍ତିବାହିନୀ ଦ୍ୱାରା ପରାସ୍ତ ହୋଇ ଫର୍ମୋଜା ଦ୍ୱୀପରେ ଆଶ୍ରୟ ନେଲା ଏବଂ ସମଗ୍ର ଚୀନରେ ଜନତାର ସରକାର ଗଢ଼ାହେଲା । ଚ୍ୟାଙ୍ଗ୍‌ର ପରାଜୟ ସହିତ ଆମେରିକାର ସମସ୍ତ ପ୍ରଭାବ ଚୀନ ମାଟିରୁ ଲୋପ ପାଇଲା । ଚୀନ ଆଜି ଆମେରିକାନ୍ ସାମ୍ରାଜ୍ୟବାଦୀଙ୍କ ଚରହୁଇଁ ହୋଇ ରହିଲାନାହିଁ । ଫଳରେ ଆମେରିକାର ବହୁତ କ୍ଷତି ହେଲା । ଚ୍ୟାଙ୍ଗ୍‌କୁ ଆମେରିକା ଯେଉଁ ଅପରିମେୟ ଧନ ସାହାଯ୍ୟ କରିଥିଲା, ତାହା ଫେରପାଇବାର ବାଟ ମଧ୍ୟ ବନ୍ଦ ହୋଇଗଲା । ଆମେରିକା

ଏହି ବର୍ତ୍ତମାନ ଭୁଲିବାକୁ ପ୍ରସ୍ତୁତ ନୁହେ । ତେଣୁ ଅଦ୍ୟାପି ଚୀନର କମ୍ୟୁନିଷ୍ଟ ସରକାରକୁ ଆମେରିକା ସ୍ୱୀକାର କରୁ ନାହିଁ । ସେଥିପାଇଁ ଆମେରିକାସରକାର ଚ୍ୟାଙ୍ଗ୍‌କୁ ଅଦ୍ୟାପି ସାମରିକ ସାହାଯ୍ୟ ଦେଉଛି, ଆମେରିକାଠାରୁ ଅସ୍ତ୍ର ପାଇ ଚ୍ୟାଙ୍ଗ୍ ଫର୍ମୋଜାରେ ରହି ଚୀନଦେଶକୁ ପୁନର୍ବାର ଦଖଲ କରିବାର ଯୋଗାଡ଼ କରୁଛି । ଚୀନ ଅଭିଯାନ ପାଇଁ କୋରିଆ ଏକମାତ୍ର ସ୍ଥଳମାର୍ଗ ।

ଆମେରିକାର ଶାସକଗୋଷ୍ଠୀ ରୁଷକୁ ନିଜର ପହିଲା ନମ୍ବର ଶତ୍ରୁ ବୋଲି ମନେକରନ୍ତି । ରୁଷକୁ କିପରି ଆକ୍ରମଣ କରାଯିବ, ତାହାର ଯୋଜନାମାନ ଖୋଲାଖୋଲି ଭାବରେ ଆମେରିକାର ସମ୍ବାଦପତ୍ରମାନଙ୍କରେ ମଧ୍ୟ ଆଲୋଚନା ହେଉଛି । ରୁଷର ସୀମାନ୍ତ କୋରିଆକୁ ଲାଗିଛି । କୋରିଆକୁ ନିଜର ଅଧିକାରରେ ରଖି ପାରିଲେ ଚୀନ ଓ ରୁଷ ଉଭୟଙ୍କୁ ସ୍ଥଳପଥରେ ଆକ୍ରମଣ କରିବା ସହଜହେବ । ଏହିପରି ଭାବରେ ଆମେରିକାର କେତେକ ସମର-ବାଦୀ ଉଚ୍ଚସ୍ୱରରେ ଚିନ୍ତା କରିବାର ଜଣାପଡ଼ୁଛି ।

ଏହି ଆନ୍ତର୍ଜାତିକ ପରିସ୍ଥିତି କୋରିଆକୁ ଏକ ନୂଆ କୁରୁକ୍ଷେତ୍ରରେ ପରିଣତ କରିଛି । ଆଜି କ୍ଷୁଦ୍ର କୋରିଆ ଦେଶକୁ ଯେଉଁ ଯୁଦ୍ଧାଗ୍ନି ଛାରଖାର କରୁଛି, ତାହା ସର୍ବଗ୍ରାସୀ ପୃଥିବୀବ୍ୟାପୀ ଯୁଦ୍ଧରେ ପରିଣତ ହେବାର ବିପଦ ଯେ ରହିଛି, ଏହା ଅସ୍ୱୀକାର କରାଯାଇନପାରେ । ଶାନ୍ତିକାମୀ ଏବଂ ଯୁଦ୍ଧବାଦୀ ଉଭୟଙ୍କ ପକ୍ଷରେ କୋରିଆ ହେଉଛି ପ୍ରଥମ ପରୀକ୍ଷାକ୍ଷେତ୍ର ।

---

# ଗୋଟିଏ ଦେଶରେ ଦୁଇଟି ଦୁନିଆ

୧୯୪୫ ଅଗଷ୍ଟ ପନ୍ଦର କୋରିଆ ଜାତିର ଇତିହାସରେ ଚିରସ୍ମରଣୀୟ ଦିବସ । ସେହିଦିନ ୪୦ ବର୍ଷର ଜାପାନୀ ଶାସନ କୋରିଆ ମାଟିରୁ ଲୋପପାଇଲା, କୋରିଆଜାତିର ଭାଗ୍ୟ ଉଦୟ ହେଲା । ଜାପାନୀ ସାମ୍ରାଜ୍ୟବାଦୀଙ୍କୁ ପରାସ୍ତ କରି ବିଜୟୀ ସୋଭିଏଟ୍ ବାହିନୀ ସେହିଦିନ କୋରିଆଦେଶର ସ୍ୱାଧୀନତା ଘୋଷଣା କରିଥିଲେ । ସୋଭିଏଟ୍ ରୁଷ ସାମ୍ୟବାଦର ଦେଶ । ତାର ସୈନ୍ୟ ସାମ୍ରାଜ୍ୟ ବିସ୍ତାର ପାଇଁ କୌଣସି ଦେଶ ଦଖଲ କରେ ନାହିଁ । ଏହା କୋରିଆର ନିପୀଡ଼ିତ ଜନସାଧାରଣ ଭଲଭାବରେ ବୁଝିଥିଲେ । ତେଣୁ କୋରିଆରେ ସର୍ବତ୍ର ସୋଭିଏଟ୍ ବାହିନୀ ସାଦର ସମ୍ଭାଷଣ ପାଇଲା, ତାର ଅପୂର୍ବ ବ୍ୟବହାର ଦ୍ୱାରା କୋରିଆବାସୀଙ୍କ ଆଖିରେ ମୁକ୍ତିଦାତା ଭାବରେ ସୋଭିଏଟ୍ ସୈନ୍ୟ ଗୌରବ ଓ ସମ୍ମାନର ହକ୍‌ଦାର ହେଲା ।

ସୋଭିଏଟ୍ ସେନାପତି କୋରିଆରେ ପ୍ରବେଶ କରି କୋରିଆବାସୀଙ୍କୁ ଉଦ୍‌ବୋଧନ କରି କହିଥିଲେ:—

"କୋରିଆର ନାଗରିକବୃନ୍ଦ, ତୁମର ଦେଶ ଆଜି ମୁକ୍ତ ହେଲା । କିନ୍ତୁ ଏହା କୋରିଆ ଇତିହାସର ପ୍ରଥମ ପୃଷ୍ଠା ମାତ୍ର ।

ଯେପରି କି ଉଦ୍ୟାନର ପୁଷ୍ପସମ୍ଭାର ମନୁଷ୍ୟର ପରିଶ୍ରମ ଓ ଯତ୍ନର ଫଳ, ସେହିପରି ତୁମର ସୁଖସମ୍ପଦ କୋରିଅବାସୀଙ୍କର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଓ ଅବିଶ୍ରାନ୍ତ ପରିଶ୍ରମରେହିଁ ସମ୍ଭବ ହେବ ।

"କୋରିଅର ନାଗରିକବୃନ୍ଦ, ସୁଖସମ୍ପଦ ତୁମରି ହାତରେହିଁ ରହିଛି । ତୁମେ ତୁମର ସ୍ୱାଧୀନତା ପାଇଛ । ବର୍ତ୍ତମାନ ସବୁ ତୁମର ଉପରେ କେବଳ ନିର୍ଭର କରୁଛି । ସ୍ୱାଧୀନ ସୃଜନଶୀଳ କର୍ମରେ କୋରିଅବାସୀ ନିଜକୁ ନିଯୁକ୍ତ କରିବା ପାଇଁ ସୋଭିଏଟ୍ ସେନା ସମସ୍ତ ସୁଯୋଗ ସୃଷ୍ଟି କରିଦେଇଛି । ତୁମର ସୁଖସମ୍ପଦ ତୁମକୁହିଁ ନିଜେ ଗଢ଼ିବାକୁ ପଡ଼ିବ ।"

ସୋଭିଏଟ୍ ସୈନ୍ୟଙ୍କ ପ୍ରବେଶ ଦେଶସାରା ପ୍ରବଳ ବୈପ୍ଳବିକ ଉତ୍ସାହ ଖେଳାଇଦେଲା । ସହର, ମଫସଲ ସବୁଆଡ଼େ ଜନସାଧାରଣ ନିଜର ଭାଗ୍ୟ ନିଜ ହାତରେ ଗଢ଼ିବାପାଇଁ ଅଗଭର ହୋଇ ବାହାରି ପଡ଼ିଲେ । ପ୍ରତ୍ୟେକ ଗାଁରେ, ସହରର ପ୍ରତ୍ୟେକ ପଡ଼ାରେ ଜନ-କମିଟି ସର୍ବସାଧାରଣଙ୍କ ଦ୍ୱାରା ନିର୍ବାଚିତ ହୋଇ ଗଠିତ ହେଲା । ଯେଉଁ ବୀର ଯୋଦ୍ଧାମାନେ ବର୍ଷ ବର୍ଷ ଧରି ଜାପାନୀ ସାମ୍ରାଜ୍ୟବାଦର ଅମାନୁଷିକ ଅତ୍ୟାଚାର ବିରୁଦ୍ଧରେ ପ୍ରାଣପାତ ସଂଗ୍ରାମ କରି ଆସୁଥିଲେ, ସେହିମାନେ ନିଜର ଗୋପନ ଫେରାରୀଜୀବନ ତ୍ୟାଗ କରି ବାହାରକୁ ଆସି ଜନସାଧାରଣଙ୍କ ନେତୃତ୍ୱ ଗ୍ରହଣ କଲେ । କୋରିଅରେ ଅପୂର୍ବ ଜନ ଉତ୍‌ତେଜନା ଦେଖାଦେଲା । ୧୯୪୫ ସେପ୍ଟେମ୍ବର ୬ ତାରିଖ ଦିନ କୋରିଅ ରାଜଧାନୀ ସେଓଲ ଠାରେ ବିଭିନ୍ନ ଜନକମିଟି ଦ୍ୱାରା ନିର୍ବାଚିତ ପନ୍ଦରଶହ ପ୍ରତିନିଧି ସମବେତ ହୋଇ ଜନତାର ଏକ ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠା କଲେ, ଏବଂ ଦେଶର ଶାସନ ପରିଚାଳନା ପାଇଁ ଏକ କେନ୍ଦ୍ର କମିଟି ନିର୍ବାଚନ କଲେ ।

କିନ୍ତୁ ଏହି ଶାନ୍ତିପୂର୍ଣ୍ଣ ବିକାଶ ହଠାତ୍ ଏକ ନୂଆ ଧରଣର ବାଧାର ସମ୍ମୁଖୀନ ହେଲା । ଜାପାନ ଆତ୍ମସମର୍ପଣ କଲାବେଳେ ଯୁକ୍ତରାଷ୍ଟ୍ର ଆମେରିକା ଦାବୀ କଲା ଯେ ତାର ସୈନ୍ୟବାହିନୀ କୋରିଆର ଏକଅଂଶ ଦଖଲ କରିବେ । ଏହି ଆତ୍ମସମର୍ପଣସର୍ତ୍ତ ଅନୁସାରେ କୋରିଆକୁ ଅସ୍ଥାୟୀ ଭାବରେ ଦୁଇଭାଗରେ ବିଭକ୍ତ କରାଗଲା । ୩୮ ଅକ୍ଷାଂଶର ଉତ୍ତରରେ ସୋଭିଏଟ ସୈନ୍ୟ ରହିଲେ । ଦକ୍ଷିଣାଂଶ ଯୁକ୍ତରାଷ୍ଟ୍ର ସୈନ୍ୟବାହିନୀର କର୍ତ୍ତୃତ୍ୱରେ ରହିଲା ।

୧୯୪୫ ସେପ୍ଟେମ୍ବର ୮ ତାରିଖ ଦିନ ଆମେରିକାର ସୈନ୍ୟ-ବାହିନୀ କୋରିଆରେ ଓହ୍ଲାଇଲେ । ପ୍ରଶାନ୍ତ ମହାସାଗରର ଅଞ୍ଚଳର ଆମେରିକାନ୍ ସେନାନାୟକ ଜେନେରାଲ୍ ମାକ୍ଆର୍ଥର ଦକ୍ଷିଣ କୋରିଆକୁ ଦଖଲ କରି ଘୋଷଣା କଲେ:—

"୩୮ ଅକ୍ଷାଂଶର ଦକ୍ଷିଣରେ ସମସ୍ତ ଅଞ୍ଚଳର ଶାସନକ୍ଷମତା ମୋର ଅଧୀନକୁ ଆସିଲା । ମୋର ସ୍ୱାକ୍ଷର ଥିବା ସମସ୍ତ ଆଦେଶ ଜନସାଧାରଣଙ୍କୁ ଦ୍ୱିଧାହୀନ ଭାବରେ ମାନିବାକୁ ପଡ଼ିବ । ଯେଉଁମାନେ ଦଖଲକାରୀ ସୈନ୍ୟବାହିନୀ ବିରୁଦ୍ଧରେ କାର୍ଯ୍ୟ କରିବେ, ସେମାନଙ୍କୁ ନିର୍ଦ୍ଦୟ ଭାବରେ କଠିନ ଦଣ୍ଡ ଦିଆଯିବ । ସାମରିକ ଶାସନ ଚାଲିଥିବା ସମୟ ପାଇଁ ଇଂରାଜୀଭାଷା କୋରିଆର ସରକାରୀ ଭାଷାରୂପେ ବ୍ୟବହାର କରାଯିବ ।"

ଆମେରିକା ସୈନ୍ୟବାହିନୀ ପ୍ରବେଶ କରିବା ପରେ ପରେ କୋରିଆର ଦକ୍ଷିଣାଞ୍ଚଳରେ ଦମନର ଧୂମ ଛୁଟିଲା । ଏଥିପୂର୍ବରୁ ଗଢ଼ାହୋଇଥିବା ସମସ୍ତ ଜନକମିଟିକୁ ବଳପୂର୍ବକ ଭାଙ୍ଗିଦିଆଗଲା । ଜାପାନୀ ଅମଳର ପୁରୁଣା ସରକାରୀ କଳକୁ ଆମେରିକା କର୍ତ୍ତୃପକ୍ଷ ପୁନରୁଦ୍ଧାର କଲେ । ଜାପାନୀ ଅମଳରେ ଯେଉଁମାନେ କୋରିଆ-ବାସୀଙ୍କ ଉପରେ ଅତ୍ୟାଚାର ଚଳାଇଥିଲେ, ସେହିମାନେ ପୁନର୍ବାର

ଶାସନକଳର ପରିଚାଳକ ହେଲେ । ଏହାପରେ କି ଜାପାନୀ ଅମଳର ବଡ଼ଲାଟ "ଅବେ" ବହୁଦନ ଯାଏ ଆମେରିକା କର୍ତ୍ତୃପକ୍ଷଙ୍କ ଅଧୀନରେ ବଡ଼ଲାଟ ହୋଇ ରହିଥିଲେ । ପରେ ତାହାଙ୍କୁ ତୀବ୍ର ନିନ୍ଦାବାଦ ହେବାରୁ ତାଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇଥିଲା ।

ଯୁଗ ଯୁଗ ଧରି ଅବିଭାଜ୍ୟ ଅଖଣ୍ଡ କୋରିଆ ଦେଶ ଆମେରିକା ସରକାରଙ୍କ ଦାବୀ ଯୋଗୁଁ ଦୁଇଭାଗରେ ବିଭକ୍ତ ହେଲା । ଗୋଟିଏ ଦେଶରେ ଦୁଇଧରଣର ଶାସନପ୍ରଚଳିତ ହେଲା । ଉତ୍ତର କୋରିଆର ଜନସାଧାରଣ ନିଜ ଦେଶର ଭାଗ୍ୟ ନିଜହାତରେ ଗଢ଼ିବାର ସୁବିଧା ପାଇଲେ, କିନ୍ତୁ ଦକ୍ଷିଣ କୋରିଆରେ ପୁରୁଣା ସାମ୍ରାଜ୍ୟବାଦୀ ଶାସନକଳ ପୂର୍ବପରି ଜନସାଧାରଣଙ୍କୁ ଶୋଷଣ କରିବାକୁ ଲାଗିଲା । ଦକ୍ଷିଣକୋରିଆବାସୀଙ୍କ ପକ୍ଷରେ କେବଳ ପ୍ରଭୁର ପରିବର୍ତ୍ତନ ଘଟିଲା, କିନ୍ତୁ ଶୋଷଣ ଓ ପରାଧୀନତା ପୂର୍ବପରି ରହିଲା ।



# ଉତ୍ତର କୋରିଆର ଜନଶାସନ

ସୋଭିଏତ୍ ବାହିନୀ କୋରିଆରେ ପ୍ରବେଶ କରିବା ପରେ ସମଗ୍ର କୋରିଆରେ ଯେଉଁ ଜନଶାସନ ପ୍ରତିଷ୍ଠିତ ହୋଇଥିଲା, ବର୍ତ୍ତମାନ ତାହା କେବଳ ଉତ୍ତର କୋରିଆରେ ସୀମିତ ହୋଇ ରହିଲା । ଗରିଲା-ସେନାପତି ଶ୍ରମିକନେତା କିମ୍ଇରସେନଙ୍କ ନେତୃତ୍ୱରେ ଉତ୍ତର କୋରିଆର ଜନଶାସନ ନିଜର ପ୍ରଭାବ ପ୍ରତିପତ୍ତି ସୁଦୃଢ଼ କରି ପାରିଲା ।

କିମଇରସେନ୍ ପ୍ରକୃତରେ କହିବାକୁ ଗଲେ ସମଗ୍ର କୋରିଆଜାତିର ଅତି ଆଦରର ନେତା । କୋରିଆର ପ୍ରତ୍ୟେକ ଅଞ୍ଚଳରେ ଦେଶର ଆଶାଭରସା ଜାତୀୟନେତା ଭାବରେ ସେ ପୂଜା ପାଇଆସିଛନ୍ତି । ବିପ୍ଳବୀ ପିତାର ସନ୍ତାନ ସେ । ବାପା ସ୍କୁଲମାଷ୍ଟର, ଜାପାନ ବିରୁଦ୍ଧରେ ଲଢି ଦୁଇଥର ଜେଲ ଭୋଗି ଶେଷରେ ଭଗ୍ନ ସ୍ୱାସ୍ଥ୍ୟରେ ମାତୃଭୂମିରୁ ନିର୍ବାସିତ ହୋଇ ମାଞ୍ଚୁରିଆରେ କାଳ କାଟୁଥିଲେ । ୧୯୩୧ ରେ ଜାପାନ ଯେତେବେଳେ ମାଞ୍ଚୁରିଆ ଦଖଲ କଲା, କିମ୍ଇରସେନ ୧୮ ବର୍ଷ ବୟସରେ ଗରିଲା ଯୁଦ୍ଧ କରିବା ପାଇଁ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ତାଙ୍କର ମା' ଥିଲେ ପ୍ରକୃତ ବିପ୍ଳବୀର ସହଧର୍ମିଣୀ । ବହୁଦିନରୁ ସଞ୍ଚିତ ସ୍ୱାମୀଙ୍କ ସ୍ନେହର ସମ୍ବଳ ଦୁଇଟି ବନ୍ଧୁକ ଉପହାର ଦେଇ ବୀରମାତାର ଆଶୀର୍ବାଦରେ

ଉତ୍ସାହିତ କରି ସେ ଯୁବକଯୁବତୀଙ୍କୁ ଜାପାନୀ ବିରୁଦ୍ଧରେ ଲଢ଼ିବାପାଇଁ ଘରୁ ବିଦାୟ ଦେଇଥିଲେ । ସେତେବେଳେ କେବଳ ୩୦ ଜଣ ସମବୟସ୍କ ଯୁବକଙ୍କ ସହିତ କିମ୍‌ଇରସେନ ଗରିଲା ବାହିନୀ ଗଠନ ଆରମ୍ଭ କରିଥିଲେ । କିନ୍ତୁ ତାଙ୍କର ଅଦମ୍ୟ ଉଦ୍ୟମ ଶୀଘ୍ର ସଫଳତା ଦିଗରେ ଅଗ୍ରସର ହେଲା । ସେ କୋରିଆରେ ପ୍ରବେଶ କରି କୋରିଆର କୃଷକ ଓ ଶ୍ରମିକମାନଙ୍କୁ ସଙ୍ଗଠିତ କରି ଜାପାନ ବିରୁଦ୍ଧରେ ଏକ ବିରାଟ ଆନ୍ଦୋଳନ ଗଢ଼ିବାକୁ ଲାଗିଲେ । ଅନେକ-ଥର ସେ କୋରିଆର ବିଭିନ୍ନ ସହର ଜାପାନୀ ହାତରୁ ଛଡ଼ାଇ କୋରିଆର ଜାତୀୟପତାକା ଉଡ଼ାଇଛନ୍ତି । ୧୯୩୭ରେ ସେ ଗୋଟିଏ ଷ୍ଟେଟ ସହର ଦଖଲ କରି ନେଇଥିଲେ । ପ୍ରତିରୋଧକାରୀ ଦୁଇଶହ ଜାପାନୀ ସୈନ୍ୟ ଏହି ଯୁଦ୍ଧରେ ନିହତ ହୋଇଥିଲେ । ଏହା ଜାପାନୀ ସାମ୍ରାଜ୍ୟବାଦୀଙ୍କ ମନରେ ଆତଙ୍କ ସଞ୍ଚାର କରିଦେଲା । ତେଣୁ କିମ୍‌ଇରସେନଙ୍କୁ ଜୀବିତ କିମ୍ବା ମୃତ ଅବସ୍ଥାରେ ଧରି ଆଣି ପାରିଲେ ପାଞ୍ଚଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ବୋଲି ଜାପାନୀ କର୍ତ୍ତୃପକ୍ଷ ଘୋଷଣା କଲେ । ଜଣେ ଜାପାନୀ ଦଲାଲ ଲୋଭ ସମ୍ବରଣ କରି ନପାରି କିମ୍‌ଇରସେନ ନାମକ ଅନ୍ୟ ଏକ ବ୍ୟକ୍ତିଙ୍କୁ ହତ୍ୟା-କରି ସେହି ପୁରସ୍କାର ଟଙ୍କା ଆଦାୟ କରିନେଲା । ଜାପାନୀ ସରକାର ଆନନ୍ଦରେ କିମ୍‌ଇରସେନଙ୍କ ମୃତ୍ୟୁଖବର ଚାରିଆଡ଼େ ପ୍ରଚାର କରିଦେଲେ । କିନ୍ତୁ ଅଳ୍ପଦିନ ପରେ ପୁଣି କିମ୍‌ଇରସେନଙ୍କ ନାମ ଚାରିଆଡେ ଶୁଣାଗଲା । ତାଙ୍କ ଗରିଲାବାହିନୀର ଯଶ ଗୌରବ ଦେଶର ଚାରିଆଡ଼େ ବ୍ୟାପିବାକୁ ଲାଗିଲା । କିମ୍‌ଇରସେନଙ୍କ ମୃତ୍ୟୁ ସମ୍ବାଦ ପ୍ରଚାରିତ ହେବାପରେ ପୁଣି ତାଙ୍କ ଯଶପ୍ରସାର ସାଧାରଣ ମଫସଲବାସୀଙ୍କ ମନରେ ବିଶ୍ୱାସ ଜନ୍ମାଇଦେଲା, କିମ୍‌ଇରସେନ ଅମର, ସେ ମରିବା ଅସମ୍ଭବ । ଫଳରେ ତାଙ୍କ ଯଶ ଓ ପ୍ରଭାବ

ବହୁଗୁଣ ବଢଗଲା । ଜାପାନୀଶାସନର ଶେଷଯାଏ ସେ ଜାପାନୀ ଶାସନର ବିରୁଦ୍ଧରେ ଅବିଶ୍ରାନ୍ତ ସଂଗ୍ରାମ ଚଳାଇଥିଲେ । ଜାପାନୀ ସାମ୍ରାଜ୍ୟବାଦୀମାନେ ତାଙ୍କୁ ସବୁଠାରୁ ଅତି ମାରାତ୍ମକ ଶତ୍ରୁ ବୋଲି ମନେ କରୁଥିଲେ ।

ଉତ୍ତର କୋରିଆର ଅନ୍ୟାନ୍ୟ ନେତାମାନେ ଠିକ୍ ଏହିପରି ମୁକ୍ତିସଂଗ୍ରାମର ଅଗ୍ନିପରୀକ୍ଷାରେ ନିଜର ଶୁଦ୍ଧସୁବର୍ଣ୍ଣ ଚରିତ୍ରର ପରିଚୟ ଦେଇଛନ୍ତି, ଜନସାଧାରଣଙ୍କର ବିଶ୍ୱାସଭାଜନ ହୋଇ ପାରିଛନ୍ତି । ଏହିପରି ପରୀକ୍ଷିତ ଜନତାର ବିଶ୍ୱାସଭାଜନ ନେତାମାନେ ଉତ୍ତର କୋରିଆର ଜନଶାସନର ନେତୃତ୍ୱ ଗ୍ରହଣ କଲେ ।

ଦେଶକୁ ଧ୍ୱଂସସ୍ତୂପ ଭିତରୁ ଉଦ୍ଧାର କରିବା ଏବଂ ବହୁବର୍ଷର ପରାଧୀନତାର କୁଫଳକୁ ଲୋପକରି ଏକ ଜନତାର ରାଷ୍ଟ୍ର ଗଢ଼ିବାର ଗୁରୁଦାୟିତ୍ୱ ଏହି ଜନନାୟକମାନଙ୍କୁ ବହନ କରିବାକୁ ପଡ଼ିଥିଲା । ଦେଶ ଆଗରେ ଅତି ଜରୁରୀ ପ୍ରଧାନ ସମସ୍ୟା ରୂପେ ଦେଖା ଦେଇଥିଲା:—

୧. ଜାତୀୟ ଗଣସାମ୍ମୁଖ୍ୟର ମୂଳଦୁଆ ଉପରେ ଯେଉଁ ଜନକମିଟି ସବୁ ଗଢ଼ାଯାଇଥିଲା, ସେସବୁର ଦୃଢ଼ୀକରଣ ।

୨. ଜାପାନୀଶାସନର କୁଫଳଯୋଗୁଁ ଦେଶର ଉନ୍ନତି ପଥରେ ଯେଉଁ ସବୁ ପ୍ରତିବନ୍ଧକ ରହିଥିଲା, ସେସବୁର ଦୂରୀକରଣ । ବାଚନିକ ସ୍ୱାଧୀନତା, ସାମ୍ବାଦିକ ସ୍ୱାଧୀନତା, ସ୍ୱଚ୍ଛନ୍ଦ ଭାବରେ ସମ୍ମିଳିତ କରିବାର ଅଧିକାର ସାଧାରଣ ଲୋକେ ଉପଭୋଗ କରିପାରିବେ, ସେଥିପାଇଁ ସୁବିଧା ଓ ସୁଯୋଗ ସୃଷ୍ଟି ।

୩. ଦେଶରୁ ସାମନ୍ତବାଦୀ ପ୍ରଭାବ ଲୋପ କରିବାପାଇଁ ଜମିଦାର ଏବଂ ଜାପାନୀ ଉପନିବେଶକାରୀମାନଙ୍କର ଜମି ବାଜ୍ୟାପ୍ତି

କର ଜମିହୀନ ଗୃହସ୍ଥୀଙ୍କ ଭିତରେ ବଣ୍ଟନ ଏବଂ ସାମନ୍ତବାଦୀ ଜମିଜମା ସମ୍ପର୍କର ଧ୍ୱଂସସାଧନ । କଳକାରଖାନା, ଯାନବାହନ, ବ୍ୟାଙ୍କ୍, ଖଣି, ଜଙ୍ଗଲ ପ୍ରଭୃତିର ଜାତୀୟକରଣ । ଜନସାଧାରଣଙ୍କ ଅବସ୍ଥାର ଉନ୍ନତିପାଇଁ ବ୍ୟବସ୍ଥା ।

୪. ଦେଶର ଶାସନଭାର ଗ୍ରହଣ କରିବାପାଇଁ ଏବଂ ଜନସାଧାରଣଙ୍କୁ ଶିକ୍ଷାଦେବା ଲାଗି ଉପଯୁକ୍ତ କର୍ମୀ ପ୍ରସ୍ତୁତ ।

ଏହି କର୍ମଯୋଜନାର ସଫଳତା ଉପରେ ଦେଶର ଗଣତାନ୍ତ୍ରିକ ବିକାଶର ଭାଗ୍ୟ ନିର୍ଭର କରୁଥିଲା । ପ୍ରଥମେ ଜନକମିଟିମାନଙ୍କୁ ସୁଦୃଢ ଓ କର୍ମକ୍ଷମ କରିବା ନିମନ୍ତେ ସାଧାରଣ ନିର୍ବାଚନ ଅନୁଷ୍ଠିତ କରାଗଲା । ୧୯୪୬ର ପ୍ରଥମ ଭାଗରେ ଗୁପ୍ତ ସାବାଳକ ଭୋଟ ପ୍ରଥା ଦ୍ୱାରା ନିର୍ବାଚନ କରାଗଲା । ଏହି ନିର୍ବାଚନ ଦେଶରେ ପ୍ରବଳ ଉତ୍ସାହ ଓ ରାଜନୈତିକ ଚେତନା ସୃଷ୍ଟି କରିଥିଲା । ନିର୍ବାଚନରେ ଶତକଡ଼ା ୯୯.୬ ନିର୍ବାଚକ ଯୋଗ ଦେଇଥିଲେ । ଦେଶର ପ୍ରାୟ ସମଗ୍ର ଜନତା ଏଥିରେ ଭାଗ ନେଇଥିଲେ । କେବଳ ନିର୍ବାଚନ ନିୟମ ଅନୁସାରେ ୪୩୮୭ ବ୍ୟକ୍ତିଙ୍କୁ ଭୋଟଦେବା ଅଧିକାରରୁ ବଞ୍ଚିତ କରାଯାଇଥିଲା । ସେମାନେ ଜାପାନୀଦଲାଲ ଏବଂ ବିକୃତ ମସ୍ତିଷ୍କର ଲୋକ । କୋର୍ଟ ରାୟଦ୍ୱାରା ସେମାନେ ଭୋଟ ଅଧିକାରରୁ ବଞ୍ଚିତ ହୋଇଥିଲେ ।

୩୪୫୯ ଜଣ ସଭ୍ୟ ପ୍ରାଦେଶିକ ସହର ଏବଂ ଜିଲ୍ଲାକମିଟିମାନଙ୍କୁ ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ୫୧୦ ଜଣ ଶ୍ରମିକ, ୧୨୫୬ କୃଷକ, ୧୦୫୬ ସାଧାରଣ ଅଫିସ୍ କର୍ମଚାରୀ, ୩୧୧ ଜଣ ସାହିତ୍ୟ ଓ କଳାକର୍ମୀ, ୧୪୫ ଜଣ ବ୍ୟବସାୟୀ, ୭୩ ଜଣ ଶିଳ୍ପମାଲିକ, ୯୦ ଜଣ ଧର୍ମଯାଜକ ଏବଂ ଅନ୍ୟାନ୍ୟ ୧୪ ଜଣ—

ଏହିପରି ଭାବରେ ସମାଜର ବିଭିନ୍ନ ସ୍ତରରୁ ପ୍ରତିନିଧି ନିର୍ବାଚିତ ହୋଇଥିଲେ । ଏହାପରେ "ଉତ୍ତର କୋରିଆ ଜନତାକମିଟି" ନିର୍ବାଚନ ହେଲା ଏବଂ ଏହା ଉତ୍ତର କୋରିଅର କେନ୍ଦ୍ର ସରକାର ରୂପେ କାର୍ଯ୍ୟକଲା । ଏହି ଗଣତାନ୍ତ୍ରିକ ନିର୍ବାଚନ କେନ୍ଦ୍ର ଜନକମିଟି ତଥା ସ୍ଥାନୀୟ ଜନକମିଟିମାନଙ୍କୁ ଶାସନ କରିବାପାଇଁ ଆଇନଗତ ଅଧିକାର ପ୍ରଦାନ କଲା ।

ଗଣତାନ୍ତ୍ରିକ ରାଷ୍ଟ୍ର ଗଢ଼ିବା ପାଇଁ ଗଣତାନ୍ତ୍ରିକ ସଂସ୍କାର ଦରକାର । ଏହା ନ ହୋଇପାରିଲେ ଭାଙ୍ଗି ଯାଇଥିବା ଅର୍ଥନୀତିର ପୁନରୁଦ୍ଧାର ଓ ବିକାଶ ଆଦୌ ସମ୍ଭବ ନୁହେଁ । ଦେଶର ପ୍ରକୃତ ଗଣରାଷ୍ଟ୍ର ସ୍ଥାପନ କରିବା ନିମନ୍ତେ ଜନସାଧାରଣଙ୍କ ଅବସ୍ଥାର ଉନ୍ନତି ଅତି ପ୍ରୟୋଜନ । ସେଥି ସକାଶେ କୋରିଅର ଜନସରକାରଙ୍କର ସର୍ବପ୍ରଥମେ ଦୃଷ୍ଟି ପଡ଼ିଲା, ସାମନ୍ତବାଦୀ ଜମିପ୍ରଥା ଉପରେ । ଦେଶର ଶତକଡ଼ା ୮୦ ଭାଗ କୃଷକ ଏବଂ ସେମାନଙ୍କର ସାମନ୍ତବାଦୀ ବନ୍ଧନରୁ ମୁକ୍ତ ହେଲା ପ୍ରଥମ ଓ ପ୍ରଧାନ ସମସ୍ୟା । ୧୯୪୬ ମାର୍ଚ୍ଚ ମାସରେ ଜମିଜମା ସଂସ୍କାର ଆଇନ ଜାରିହେଲା । ଏଥିରେ ଜମିଦାର ଜାପାନୀ ଉପନିବେଶବାସୀ ଏବଂ ଜାତୀୟ ବିଶ୍ୱାସଘାତକମାନଙ୍କର ସମସ୍ତ ଜମି ବିନା କ୍ଷତିପୂରଣରେ ଜମିହୀନ ଏବଂ ଅଳ୍ପଭୂମିବାନ କୃଷକମାନଙ୍କ ଭିତରେ ବଣ୍ଟାଗଲା । କୃଷି ଉନ୍ନତିର ପ୍ରଧାନ ପ୍ରତିବନ୍ଧକ ସାମନ୍ତବାଦୀ ପ୍ରଥା ଲୋପ ପାଇଲା, ପ୍ରତିକ୍ରିୟା ଓ ଦେଶଦ୍ରୋହର ପ୍ରଧାନପୀଠ, ଜମିଦାର ଓ କଲନ୍ତର ନେଉଥିବା ମହାଜନମାନଙ୍କର ଅର୍ଥନୈତିକ ଭିତ୍ତି ଭୁଶୁଡ଼ିପଡ଼ିଲା । କୃଷୀର ବହୁ ପୁରୁଣା ଆଶା, ତାର ଯୁଗଯୁଗର ସ୍ୱପ୍ନ ଆଜି ସଫଳ ହେଲା । ସେ ନିଜେ ଚାଷକରିବା ଜମିର ମାଲିକ ହୋଇପାରିଲା । ସାମନ୍ତବାଦୀ ଶୋଷଣ, ଜମିଦାରୀ ଅତ୍ୟାଚାରରୁ ସେ ମୁକ୍ତିଲାଭ କଲା ।

ଫଳରେ ତାର ଶ୍ରମିକମାନଙ୍କ ଉତ୍ସାହ ବଢ଼ିଲା, ଆତ୍ମବିଶ୍ୱାସ ଜାଗିଉଠିଲା । କୃଷିର ଉନ୍ନତି କରିବା ପାଇଁ ତାର ଇଚ୍ଛା ଓ ଆଗ୍ରହ ବଢ଼ିଲା । ଏହି ଅତି ଜରୁରୀ ପ୍ରାଥମିକ ସଂସ୍କାର ଗ୍ରାମ ଅଞ୍ଚଳର ଅର୍ଥନୈତିକ ବିକାଶ ପାଇଁ ରାସ୍ତା ଖୋଲିଦେଲା ।

୧୯୪୬ ଅଗଷ୍ଟ ଦଶରେ ଉତ୍ତର କୋରିଆ ସରକାର ଶିଳ୍ପ-ଜାତୀୟକରଣ ପାଇଁ ଏକ ଆଇନ ଜାରିକଲେ । ଏହି ଆଇନବଳରେ ଜାପାନୀ ସାମ୍ରାଜ୍ୟବାଦୀଙ୍କ ଅଧୀନରେ ଥିବା ସମସ୍ତ ଶିଳ୍ପ, ରେଳବାଇ, ଦ୍ୟାଙ୍କ ଜନସାଧାରଣଙ୍କର ସମ୍ପତ୍ତି ହେଲା । ଠିକ୍ ସେହିପରି ଜାପାନୀ ଦଲାଲ ଦେଶଦ୍ରୋହୀମାନଙ୍କ ଅଧୀନରେ ଥିବା ଶିଳ୍ପମାନ ମଧ୍ୟ ବାଜ୍ୟାପ୍ତ ହୋଇ ଜାତିର ସମ୍ପତ୍ତି ହେଲା । ଦେଶର ପ୍ରାୟ ସମସ୍ତ ଶିଳ୍ପସମ୍ପତ୍ତି ଏହା ଫଳରେ ରାଷ୍ଟ୍ରସମ୍ପତ୍ତି ହୋଇ ଦେଶର ତଥା ଶ୍ରମଜୀବୀ ଜନତାର ଅର୍ଥନୈତିକ ବିକାଶରେ ସାହାଯ୍ୟ କଲା । ଶିଳ୍ପ ଜାତୀୟକରଣ ଫଳରେ ଜନତାର ସରକାର ଦେଶର ଅର୍ଥନୀତି ଗଠନରେ ନେତୃତ୍ୱ ନେଇ ପାରିଲା ।

ଏହା ପୂର୍ବରୁ କୋରିଆ ଶ୍ରମିକ ଦିନକୁ ଚଉଦ ଘଣ୍ଟାରୁ ଷୋଳଘଣ୍ଟା ଯାଏଁ କାମ କରୁଥିଲା । ବର୍ତ୍ତମାନ ସରକାର ଦୈନିକ ଶ୍ରମସମୟ ଅଠଘଣ୍ଟା ସ୍ଥିର କରିଦେଲେ ଏବଂ କଷ୍ଟକର କାର୍ଯ୍ୟମାନଙ୍କରେ ଦୈନିକ ସାତଘଣ୍ଟା ସର୍ବାଧିକ ସମୟ ରୂପେ ସ୍ଥିର କରାଗଲା । ସାଧାରଣ ଶିଳ୍ପମାନଙ୍କରେ ଶ୍ରମିକ ବର୍ଷମାସକୁ ପନ୍ଦରଦିନ ଛୁଟି ପାଇବ ଏବଂ କଷ୍ଟକର କାର୍ଯ୍ୟରେ ନିଯୁକ୍ତ ଶ୍ରମିକ ସେହିପରି ଏକମାସ ଛୁଟିପାଇବ । ଚଉଦଠାରୁ ଷୋଳବର୍ଷର କିଶୋରମାନେ କେବଳ ୫।୬ ଘଣ୍ଟାଯାଏଁ କାମ କରିପାରିବେ ଏବଂ ଚଉଦବର୍ଷରୁ କମ ବୟସ୍କଙ୍କୁ କାମରେ ଲଗାଇବା ନିଷେଧ କରାଗଲା । ଶ୍ରମଜୀବୀମାନଙ୍କର ସ୍ୱାର୍ଥରକ୍ଷା ଏବଂ ସାମାଜିକ ବୀମାପାଇଁ ଅନ୍ୟାନ୍ୟ

ଅଇନ ମଧ୍ୟ ପ୍ରବର୍ତ୍ତନ କରାଗଲା । କୋରିଅର ଇତିହାସରେ ଶ୍ରମିକ ସ୍ତ୍ରୀପୁରୁଷଙ୍କ ପାଇଁ ମନୁଷ୍ୟୋଚିତ ଅଧିକାର ଉପଭୋଗ କଲା ।

ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ସହ ସମାନ ଅଧିକାର ଦିଆଗଲା । ଫଳରେ ବହୁସଂଖ୍ୟକ ମହିଳା ଦେଶର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଜୀବନରେ ସକ୍ରିୟ ଅଂଶ ନେଇପାରିଲେ । ଆଜି ବିଭିନ୍ନ ଜନକମିଟିକୁ ୧୧୫୦୯ ଜଣ ମହିଳାସଭ୍ୟ ନିର୍ବାଚିତ ହୋଇଛନ୍ତି । ଏବଂ ଦେଶର ସର୍ବଶ୍ରେଷ୍ଠ ବ୍ୟବସ୍ଥାପକ ସଭାରେ ୬୯ ଜଣ ନିର୍ବାଚିତ ମହିଳାସଭ୍ୟ ସ୍ଥାନ ପାଇଛନ୍ତି ।

ଏହି ସମସ୍ତ ଗଣତାନ୍ତ୍ରିକ ପରିବର୍ତ୍ତନ ଫଳରେ ସ୍ୱାଧୀନତା ପ୍ରାପ୍ତିର ପାଞ୍ଚବର୍ଷ ଭିତରେ ଉତ୍ତର କୋରିଅ ଅଦ୍ଭୁତ ଭାବରେ ଉନ୍ନତି ଦେଖାଇ ପାରିଛି । ଯେଉଁସବୁ ବାଧା ପ୍ରତିବନ୍ଧକ ଅତିକ୍ରମ କରି ଏହି ବିକାଶ ସମ୍ଭବ ହୋଇଛି, ତାହା ଆଲୋଚନା କଲେ କୋରିଅ-ଜାତୀୟଉଦ୍ୟମ ସମସ୍ତଙ୍କ ପ୍ରଶଂସାଭାଜନ ହେବ । କୋରିଅ ଛାଡିବା ପୂର୍ବରୁ ଜାପାନୀ ସାମ୍ରାଜ୍ୟବାଦୀମାନେ କୋରିଅର ମୁଖ୍ୟ କଳକାରଖାନା, ଖଣି, ଯାନବାହାନଆଦି ନଷ୍ଟ କରିଦେଇଥିଲେ । ଜାପାନୀ ଶାସକମାନେ କୋରିଅ ଲୋକଙ୍କୁ ଶିଳ୍ପକୌଶଳ ବିଦ୍ୟା କିମ୍ବା ଶାସନବିଦ୍ୟାରେ ଆଦୌ ଶିକ୍ଷିତ କରାଉନଥିଲେ । ତେଣୁ କୋରିଅବାସୀଙ୍କ ଭିତରେ ଦକ୍ଷ କାରିଗର ଏବଂ ଶାସନକ୍ଷମ ବ୍ୟକ୍ତିଙ୍କ ଅଭାବ ବିଶେଷ ଭାବରେ ପରିଲକ୍ଷିତ ହେଉଥିଲା । ଜାପାନୀ ସାମ୍ରାଜ୍ୟବାଦ କୋରିଅର ଅର୍ଥନୀତିକୁ ଜାପାନୀ ଅର୍ଥନୀତିର ଏକ ପରିଶିଷ୍ଟ ଭାବରେ ଗଢିଥିଲା, କୋରିଅର ଅର୍ଥନୀତି ଆତ୍ମନିର୍ଭରଶୀଳ ଅବସ୍ଥାରେ ନଥିଲା । ଆବଶ୍ୟକୀୟ ଶିଳ୍ପ ଉପକରଣ କୋରିଅରେ ପ୍ରସ୍ତୁତ ହେଉନଥିଲା, ଏବଂ ଯେଉଁସବୁ କଳକାରଖାନା ରହିଥିଲା, ତାର ଯନ୍ତ୍ରପାତି ଅତି ପୁରୁଣା ଏବଂ ଭଙ୍ଗାରୁଜା ଅବସ୍ଥାରେ ଅପ ପଡ଼ିଥିଲା ।

ସୋଭିଏତ୍ ଦେଶର ସାହାଯ୍ୟ ଲାଭ କରି କୋରିଅବାସୀଙ୍କର ଦେଶପ୍ରେମୀ ଉଦ୍ୟମ ଏହି ସମସ୍ତ ଅସୁବିଧା ଅତିକ୍ରମ କରିବାକୁ ସମର୍ଥ ହେଲା । ୧୯୪୭—୪୮ ରେ ପ୍ରଥମ 'ଦୁଇବର୍ଷିଆ ଯୋଜନା' ସଫଳତାସହ ପୂର୍ଣ୍ଣ ହେଲା । ବର୍ତ୍ତମାନର ଯୁଦ୍ଧ ଆରମ୍ଭ ବେଳକୁ ଦ୍ୱିତୀୟ 'ଦୁଇବର୍ଷିଆ ଯୋଜନା' ପ୍ରାୟ ପୂର୍ଣ୍ଣହେବା ଅବସ୍ଥାରେ ପହଞ୍ଚି ଯାଇଥିଲା । ଯୋଜନାର ଲକ୍ଷ୍ୟ ହେଲା—(୧) ଭାଙ୍ଗି ପଡ଼ିଥିବା ଉତ୍ପାଦନ ଯନ୍ତ୍ରପାତିର ପୁନରୁଦ୍ଧାର କରି ଅତି ଶୀଘ୍ର ଉତ୍ପାଦନ ପୂର୍ବ ଅପେକ୍ଷା ବହୁଗୁଣ ବଢ଼ାଇଦେବା । (୨) ଜାପାନୀ ଅମଳର ଉତ୍ପାଦନ ଯେପରି ଏକତରଫା ଏବଂ ଅନ୍ୟ ଉପରେ ନିର୍ଭରଶୀଳ ହୋଇ ରହିଥିଲା, ସେହି ଅବସ୍ଥାର ଶୀଘ୍ର ପରିବର୍ତ୍ତନ କରି କୋରିଅର ଅର୍ଥନୀତିକୁ ପୁରାପୁରି ଆତ୍ମନିର୍ଭରଶୀଳ କରାଇବା । (୩) ଦେଶର ଏକୀକରଣ ପରେ ସହଜରେ ଯେପରି ଦକ୍ଷିଣ କୋରିଅର ଅର୍ଥନୀତିର ମଧ୍ୟ ଦ୍ରୁତଭାବରେ ଉନ୍ନତି ହୋଇପାରିବ, ସେଥିପାଇଁ ଆବଶ୍ୟକୀୟ ବ୍ୟବସ୍ଥା । (୪) ସାଧାରଣଙ୍କ ଆବଶ୍ୟକୀୟ ଜିନିଷର ଉତ୍ପାଦନ ଯଥେଷ୍ଟ ଭାବରେ ବଢ଼ାଇବା ଏବଂ ଜନସାଧାରଣଙ୍କର ଆର୍ଥିକ ତଥା ସାଂସ୍କୃତିକ ଜୀବନର ବିକାଶପାଇଁ ବ୍ୟବସ୍ଥା ଅବଲମ୍ବନ କରିବା ।

ସାମନ୍ତବାଦର ଲୋପସାଧନ, ଶିଳ୍ପର ଜାତୀୟକରଣ ଏବଂ ପ୍ରକୃତ ଜନଶାସନର ପ୍ରତିଷ୍ଠା ସାଧାରଣ ଶ୍ରମିକଙ୍କର ନାଗରିକ ଦାୟିତ୍ୱ ଏପରି ଦ୍ରୁତଭାବରେ ବଢ଼ାଇ ପାରିଲା ଯେ ସେମାନେ ଜାତୀୟ ଯୋଜନାକୁ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପୂରଣ କରିବାପାଇଁ ପରସ୍ପର ଭିତରେ ବନ୍ଧୁତ୍ୱପୂର୍ଣ୍ଣ ପ୍ରତିଯୋଗିତା ଆରମ୍ଭ କରିଦେଲେ । ଏହି ଜାତୀୟ ପ୍ରତିଯୋଗିତାରେ ଦ୍ୱିତୀୟ ଦୁଇବର୍ଷିଆ ଯୋଜନା-ବେଳେ ଅଢ଼େଇ ଲକ୍ଷ କାରିଗର ଓ ଇଞ୍ଜିନିୟର ଯୋଗ

ଦେଇଥିଲେ । ଏହି ପ୍ରତିଯୋଗିତା ଫଳରେ ୧୯୪୯ର ଉତ୍ପାଦନ ଯୋଜନାର ତୁଳନାରେ ଶତକଡ଼ା ୧୦୨.୮ ହୋଇପାରିଥିଲା ଏବଂ ସରକାର ଅଧୀନରେ ଥିବା ଶିଳ୍ପମାନଙ୍କରେ ଉତ୍ପାଦନ ଶତକଡ଼ା ୧୦୩.୧ ହୋଇଥିଲା । ବିଭିନ୍ନ ଶିଳ୍ପସଂଗଠନ ୧୯୫୦ ପାଇଁ ଶପଥ ନେଇଥିଲେ ଯେ କୋରିଆର ମୁକ୍ତିଦିବସ ଅଗଷ୍ଟ ପନ୍ଦର ବେଳକୁ ସମଗ୍ର ୧୯୫୦ ପାଇଁ ହୋଇଥିବା ଯୋଜନା ପୂର୍ଣ୍ଣ କରିଦେବେ ।

ଶ୍ରମିକମାନଙ୍କର ଉତ୍ସାହପୂର୍ଣ୍ଣ ସହଯୋଗ ଫଳରେ ଉତ୍ତର କୋରିଆର ଅର୍ଥନୀତି ଦ୍ରୁତ ଭାବେ ଅଗେଇ ପାରିଛି । ୧୯୪୬ର ଉତ୍ପାଦନକୁ ୧୦୦ ବୋଲି ଧରିନେଲେ ୧୯୪୭ରେ ଉତ୍ପାଦନ ବଢ଼ି ୧୮୯.୩ ହୋଇ ପାରିଥିଲା, ୧୯୪୮ର ଉତ୍ପାଦନ ୨୬୩.୩ ଏବଂ ୧୯୪୯ର ୩୭୧.୧ ହୋଇ ପାରିଥିଲା । ଉତ୍ତର କୋରିଆରେ କେବଳ ପୁରୁଣା କଳକାରଖାନାକୁ ନୂଆଭାବରେ ସଜାଇ ଦିଆହେଲା, ତାହା ନୁହେଁ, ବହୁତ ନୂଆ କଳକାରଖାନା ମଧ୍ୟ ମୁଣ୍ଡଟେକି ଉଠିଲା । ବିଦ୍ୟୁତଶକ୍ତି ଏବଂ ମୂଳ ଶିଳ୍ପ କାରଖାନା ମଧ୍ୟ ଗଢ଼ାହୋଇ ପାରିଲା । ବର୍ତ୍ତମାନର ଯୁଦ୍ଧ ଆରମ୍ଭ ବେଳକୁ ଉତ୍ତର କୋରିଆର ଅର୍ଥନୀତି ପ୍ରାୟ ଆତ୍ମନିର୍ଭରଶୀଳ ଅବସ୍ଥାରେ ପହଞ୍ଚିଥିଲା ।

ଅବଶ୍ୟ ଦେଶ ଦୁଇଖଣ୍ଡରେ ବିଭକ୍ତ ହୋଇଯିବାରୁ ଏବଂ ଆମେରିକାର ଶାସକମାନେ ଦକ୍ଷିଣ କୋରିଆର ସହଯୋଗ ଉତ୍ତର କୋରିଆ ସହିତ ବନ୍ଦ କରିଦେବାରୁ କେତେକ ନୂଆଧରଣର ଅସୁବିଧା ଉପୁଜିଲା । ପୂର୍ବେ ଉତ୍ତରକୋରିଆ ମୁଖ୍ୟତଃ ଶିଳ୍ପପ୍ରଧାନ ଅଞ୍ଚଳ ହୋଇଥିଲା ଏବଂ ଦକ୍ଷିଣକୋରିଆ ସମଗ୍ର କୋରିଆର ଖାଦ୍ୟଭଣ୍ଡାରର କାର୍ଯ୍ୟ କରୁଥିଲା । ଆମେରିକା କର୍ତ୍ତୃପକ୍ଷ ଉଭୟ ଅଞ୍ଚଳ ଭିତରେ ବ୍ୟବସାୟ ବନ୍ଦ କରିଦେବାରୁ ଉତ୍ତରକୋରିଆକୁ

କୃଷି ଉତ୍ପାଦନରେ ଆତ୍ମନିର୍ଭରଶୀଳ ହେବାପାଇଁ ଯଥେଷ୍ଟ ସାଧନା କରିବାକୁ ପଡ଼ିଲା । ଯାହା ହେଉ ସାମନ୍ତବାଦୀ ପ୍ରଥା ଲୋପ ପାଇଥିବା ଯୋଗୁଁ ମୁକ୍ତ କୃଷକ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ କୃଷିଉତ୍ପାଦନ ବଢ଼ାଇବା ପାଇଁ ସମସ୍ତ ଶକ୍ତି ଖଟାଇଲା । ଫଳରେ କୃଷିଉତ୍ପାଦନ ମଧ୍ୟ ଆଶାଜନକ ଭାବରେ ବଢିଲା, ୧୯୩୯ରେ ସର୍ବୋଚ୍ଚ ଉତ୍ପାଦନକୁ ମଧ୍ୟ ଟପିଗଲା । ୧୯୪୦ର ଖାଦ୍ୟଶସ୍ୟ ଉତ୍ପାଦନକୁ ୧୦୦ ବୋଲି ଧରିନେଲେ, ୧୯୪୮ର ଉତ୍ପାଦନ ୧୨୯.୭ ଏବଂ ୧୯୪୯ର ବର୍ଷାହାନୀ ସତ୍ତ୍ୱେ ୧୨୯.୮ ହୋଇପାରିଥିଲା । କପାଉତ୍ପାଦନ ୧୯୪୦ର ଶତକଡ଼ା ୨୩୭.୯ ହୋଇଥିଲା ।

୧୯୪୯ର ୪୨ ଖଣ୍ଡ ଗ୍ରାମର ଏକ ପରୀକ୍ଷାମୂଳକ ଅନୁସନ୍ଧାନ ରିପୋର୍ଟରୁ କୃଷକସାଧାରଣଙ୍କ ସୁଖସ୍ୱଚ୍ଛନ୍ଦ ଉନ୍ନତ କିପରି ଦ୍ରୁତଭାବରେ ହୋଇ ପାରନ୍ତି, ତାର ପରିଚୟ ମିଳନ୍ତି । ଏହି ୪୨ ଖଣ୍ଡ ଗ୍ରାମରେ ୧୯୦୪ ତୁଳନାରେ ପ୍ରାଥମିକ ସ୍କୁଲସଂଖ୍ୟା ୭ ଗୁଣ ବଢିଥିଲା । କ୍ଲବ ଓ ପଠନାଗାର ୪୮ ଗୁଣ । ପ୍ରାଥମିକ ବିଦ୍ୟାଳୟମାନଙ୍କର ଛାତ୍ରସଂଖ୍ୟା ୨୧ ଗୁଣ, ସେକେଣ୍ଡାରି ସ୍କୁଲ ଛାତ୍ରସଂଖ୍ୟା ୧୦ ଗୁଣ ଏବଂ ଉଚ୍ଚ ବିଦ୍ୟାଳୟମାନଙ୍କରେ ପଢୁଥିବା ଛାତ୍ରଙ୍କ ସଂଖ୍ୟା ୬ ଗୁଣ ବଢିଥିଲା । ୧୯୪୫ରେ ଏହି ୪୨ ଖଣ୍ଡ ଗ୍ରାମର କୃଷକମାନେ ୨୩୪୦ କିଲୋଗ୍ରାମ୍ (ପ୍ରାୟ ୪ କିଲୋଗ୍ରାମ୍‌ରେ ୧ ବାଲେଶ୍ୱରୀ ସେର) ଶସ୍ୟ ଉତ୍ପାଦନ କରିଥିଲେ । ୧୯୫୦ରେ ଏହିମାନେ ୩୦୦୦ କିଲୋଗ୍ରାମ୍ ଶସ୍ୟ ଉତ୍ପାଦନ କରିପାରିଥିଲେ । ୧୯୪୦ରେ ଚାଷୀମାନେ ଖଜଣା ଦେବାପରେ ବାଧ୍ୟହୋଇ ଜମିଦାରଠାରୁ ଚଢା କଲାନ୍ତରରେ ୧୬୦ କିଲୋଗ୍ରାମ୍ ଶସ୍ୟ କରଜ ଆଣିଥିଲେ । କିନ୍ତୁ ୧୯୪୯ରେ ୭୪୦ କିଲୋଗ୍ରାମ୍ ଶସ୍ୟ ଟିକସ ଭାବରେ ଦେଇ ୧୬୨୦ କିଲୋଗ୍ରାମ୍ ଶସ୍ୟ ପରିବାରର ଖାଦ୍ୟପାଇଁ

ରଖି ୪୪୦ କିଲୋଗ୍ରାମ୍ ଶସ୍ୟ ବଜାରରେ ବିକି କଲାପରେ ୨୦୦ କିଲୋଗ୍ରାମ୍ ଶସ୍ୟ ସେମାନଙ୍କ ପାଖେ ମହଜୁଡ ରହିଥିଲା । ଗଲା ୩ ବର୍ଷ ଭିତରେ ଶତକଡା ୧୮ ଭାଗ ନୂଆଘର ତିଆରି ହୋଇଥିଲା ଏବଂ କୃଷୀମାନେ ୭୨୮ ହଳ ବଳଦ କିଣି ପାରିଥିଲେ । ଏହି ୪୨ ଖଣ୍ଡ ଗ୍ରାମର ହିସାବ ସମଗ୍ର ଉତ୍ତର କୋରିଅର ଉନ୍ନତିର ସୂଚନା ଦେଉଛି ।

ଶାସନର ସୁପରିଚାଳନା ଏବଂ ବିଭିନ୍ନ ଯୋଜନାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଉପଯୁକ୍ତ କର୍ମୀଙ୍କର ଅବଶ୍ୟକତା ଢେର ବେଶୀ । ଏହି କର୍ମୀପ୍ରସ୍ତୁତି ଉପରେ ଦେଶର ବିକାଶ ବହୁପରିମାଣରେ ନିର୍ଭର କରେ । ଏହି ଦିଗରେ ଉତ୍ତରକୋରିଅର ଜନସରକାର ବିଶେଷ ବୃଦ୍ଧି ଦେଇପାରିଛନ୍ତି । ସମଗ୍ର ଉତ୍ତରକୋରିଅରେ ୧୯୪୪ ତୁଳନାରେ ୧୯୪୯ରେ ପ୍ରାଥମିକ ସ୍କୁଲ୍ ୧.୮ ଗୁଣ ଏବଂ ଛାତ୍ରସଂଖ୍ୟା ୧.୭ ଗୁଣ ବଢ଼ିଛି । ମଧ୍ୟ ବିଦ୍ୟାଳୟ ସଂଖ୍ୟା ୨୦ ଗୁଣ ଏବଂ ଛାତ୍ରଙ୍କ ସଂଖ୍ୟା ୨୩ ଗୁଣ ବଢ଼ିଛି । ଶିଳ୍ପ ସ୍କୁଲ ସଂଖ୍ୟା ୧୦ ଗୁଣ ଏବଂ ଶିଳ୍ପଛାତ୍ରସଂଖ୍ୟା ୧୨ ଗୁଣ ବଢିଛି । ଜାପାନୀ ଅମଳରେ ଉତ୍ତର କୋରିଅରେ ଗୋଟିଏ ସୁଦ୍ଧା ଉଚ୍ଚ ଧରଣର ଶିଳ୍ପ ବିଦ୍ୟାଳୟ ନଥିଲା । ବର୍ତ୍ତମାନ ସେହିଧରଣର ୧୪ଟି ଅନୁଷ୍ଠାନ ସ୍ଥାପନ କରାହୋଇଛି ଏବଂ ସେସବୁରେ ଛାତ୍ରସଂଖ୍ୟା ଦଶହଜାର । କୋରିଅରେ କୌଣସି ଶିଳ୍ପବିଶେଷଜ୍ଞ ବା ଶିକ୍ଷିତ କାରିଗର ଜାପାନୀ ଅମଳରେ ନଥିଲେ । ଉତ୍ତର କୋରିଅର ଶିଳ୍ପଅନୁଷ୍ଠାନ-ମାନଙ୍କରୁ ୧୯୪୯ରେ କେବଳ ୪୦୦ ଜଣ ଉତୀର୍ଣ୍ଣ ହୋଇ ବାହାରିଛନ୍ତି । ୧୪୦୦ ଜଣ ଉଚ୍ଚଶିକ୍ଷିତ ବିଶେଷଜ୍ଞ ଶିକ୍ଷାଳୟମାନଙ୍କରୁ ଉତୀର୍ଣ୍ଣ ହୋଇଛନ୍ତି । ଏହାଛଡ଼ା କଳକାରଖାନାମାନଙ୍କରେ ସହସ୍ରାଧିକ ବ୍ୟକ୍ତିଙ୍କୁ ଶିଳ୍ପଶିକ୍ଷା ଦିଆଯାଉଛି ।

ଉତ୍ତରକୋରିଆର ସ୍ୱାସ୍ଥ୍ୟବ୍ୟବସ୍ଥା ମଧ୍ୟ ବହୁଉନ୍ନତ ଦେଖାଇପାରନ୍ତି । ସ୍ୱାସ୍ଥ୍ୟାଗାର, ସ୍ୱାସ୍ଥ୍ୟନିବାସ ପ୍ରଭୃତି ବିଭିନ୍ନ ସ୍ଥାନରେ ନିର୍ମାଣ ହୋଇଛନ୍ତି ଏବଂ ରୋଗବ୍ୟାଧି ବିରୁଦ୍ଧରେ ଏକ ଯୋଜନାତ୍ମକ ଅଭିଯାନ ଚାଲିଛି । ଅଳ୍ପସମୟ ଭିତରେ ଏମିତି ଅଦ୍ଭୁତ ଉନ୍ନତିର କାରଣ କଣ ? କୋରିଆର ଜାତୀୟନେତା କିମ୍ ଇଲ୍ ସେନ ଦର୍ଶାଇଛନ୍ତି:—

୧. କୋରିଅବାସୀଙ୍କ ସୋଭିଏତ୍ ସେନାଦ୍ୱାରା ଜାପାନୀ କବଳରୁ ମୁକ୍ତି ।

୨. ଉତ୍ତରକୋରିଅରେ ଗଣତାନ୍ତ୍ରିକ ସଂସ୍କାର ସ୍ଥାପନ ଏବଂ ଜନସାଧାରଣଙ୍କ ସମୃଦ୍ଧି କଲ୍ୟାଣ ଏବଂ ଗଣତାନ୍ତ୍ରିକ ବିକାଶ ଦୃଷ୍ଟିରୁ ବିଭିନ୍ନ ଗଣତାନ୍ତ୍ରିକ ସଂସ୍କାର ।

୩. ସରକାର ଜନସାଧାରଣଙ୍କର ପୂର୍ଣ୍ଣପ୍ରାଣ ସହଯୋଗ ଉପରେ ପ୍ରତିଷ୍ଠିତ । ଏହାର ମୂଳରେ ରହିଛି 'ସମ୍ମିଳିତ ଗଣତାନ୍ତ୍ରିକ —ପିତୃଭୂମିସାମ୍ମୁଖ୍ୟ', ଏବଂ ଏହା ଶ୍ରମିକଶ୍ରେଣୀର ନେତୃତ୍ୱ ଓ ପ୍ରେରଣାରେ ଗଠିତ ହେବା ଫଳରେ ଏହି ଦିଗରେ କୃତକାର୍ଯ୍ୟ ହୋଇପାରିଛି ।

୪. ସୋଭିଏତ୍ ରୁଷିଆ ଏବଂ ବିଭିନ୍ନ ଜନତାର ଗଣତାନ୍ତ୍ରିକ ଦେଶମାନଙ୍କର ଗୌରବଶାଳୀ ଅନୁଭୂତିରୁ ଶିକ୍ଷା ଗ୍ରହଣ ।

କିମ୍ ଇଲ୍ ସେନଙ୍କ ମତରେ ଏହି ସମସ୍ତ କାରଣ ଉତ୍ତର କୋରିଅର ଗଣତାନ୍ତ୍ରିକ ବିକାଶକୁ ସହଜ ଓ ସମ୍ଭବ କରିଛି ।

# ଆମେରିକା ଅଧୀନରେ ଦକ୍ଷିଣ କୋରିଆ

ଅଗଷ୍ଟ ପନ୍ଦର ଯେପରି କୋରିଆ ଜାତିର ଇତିହାସରେ ମୁକ୍ତିଦିବସ ରୂପେ ସମ୍ମାନିତ ହେଉଛି, ଠିକ୍ ସେହିପରି ସେପ୍ଟେମ୍ବର ଅଠ ତାରିଖ ଏକ ଦୁର୍ଯୋଗର ଦିବସ ବୋଲି ବିବେଚିତ ହେଉଛି । ୧୯୪୫ ସେପ୍ଟେମ୍ବର ଅଠ ତାରିଖ ଦିନ ଆମେରିକା ସୈନ୍ୟ ଦକ୍ଷିଣ କୋରିଆ ଦଖଲ କଲେ । ସେହିଦିନ ପୁରୁଣାଯୁଗର ଅଖଣ୍ଡ କୋରିଆଦେଶ ଦୁଇଖଣ୍ଡ ହୋଇଗଲା, ଦକ୍ଷିଣକୋରିଆରେ ଦମନ-ତାଣ୍ଡବ ଆରମ୍ଭ ହେଲା ।

ଜାପାନୀ ଶାସନରୁ ମୁକ୍ତିଲାଭ କରିବାପରେ କୋରିଆ ଜନତା ମନରେ ଯେଉଁ ଉଚ୍ଚଆଶା, ପ୍ରବଳ ଉତ୍ସାହ ଜାଗିଉଠିଥିଲା, ଦକ୍ଷିଣ କୋରିଆରେ ଆମେରିକାନ୍ ଶାସକମାନେ ତାହାକୁ ପାଦରେ ଦଳିବାକୁ ଉଦ୍ୟମ କଲେ । ଦକ୍ଷିଣକୋରିଆର ଆମେରିକାନ୍ ଶାସକ ଜେନେରାଲ ଅର୍ନୋଲ୍ଡ ୧୯୪୫ ଅକ୍ଟୋବର ଦଶ ତାରିଖଦିନ ଘୋଷଣାକଲେଯେ ଦକ୍ଷିଣକୋରିଆର ସାର୍ବଭୌମକ୍ଷମତା ଆମେରିକାନ୍ ସାମରିକ ଶାସନ ହାତରେହିଁ ରହିଛି, ସେହି ସାର୍ବଭୌମ କ୍ଷମତାର ଅଧିକାରୀ କୋରିଆବାସୀ ନୁହଁନ୍ତି । ଏହି ଘୋଷଣାକୁ କାର୍ଯ୍ୟକାରୀ କରିବାପାଇଁ ଆମେରିକାନ୍ ଶାସକମାନେ ସେଓଲଠାରେ ଜନ-ପ୍ରତିନିଧିଙ୍କ ଦ୍ୱାରା ଗଠିତ କୋରିଆଜନତାର ଗଣତାନ୍ତ୍ରିକ ସରକାରକୁ ବେଆଇନ୍ ଘୋଷଣାକଲେ ଏବଂ ତାହାର ନେତାମାନଙ୍କ ବିରୁଦ୍ଧରେ ଶାସ୍ତିବିଧାନ ଆରମ୍ଭ କଲେ । ଜାପାନୀ ଶାସନ ଲୋପପାଇବାପରେ ଯେଉଁ ସାର୍ବଭୌମ କ୍ଷମତା କୋରିଆବାସୀଙ୍କର ନ୍ୟାଯ୍ୟ ଅଧିକାର, ଆମେରିକାନ୍ ସରକାର ତାହାକୁ ଅସ୍ୱୀକାର କରି କାର୍ଯ୍ୟତଃ କୋରିଆର ଜନତା ବିରୁଦ୍ଧରେ ଯୁଦ୍ଧଘୋଷଣା କଲା ।

ଜାପାନର ପରାଜୟ ପରେ ଗାଁ ଗହଳରେ ଯେଉଁସବୁ ନିର୍ବାଚିତ ଜନକମିଟି ଗଠିତ ହୋଇଥିଲା, ସେସବୁ ବଳପ୍ରୟୋଗ କରି ଭାଙ୍ଗି ଦିଆଗଲା । ଏହିସବୁ ଜନକମିଟି କୋରିଆର ଗଣତାନ୍ତ୍ରିକ ବିକାଶର ମୂଳପୀଠ ରୂପେ କାର୍ଯ୍ୟ କରୁଥିଲେ, ସେମାନେ ଜନ-ସାଧାରଣଙ୍କର ସାହାଯ୍ୟରେ ସ୍ଥାନୀୟ ଶାସନର ଦାୟିତ୍ୱ ନେଇଥିଲେ । ଏମାନଙ୍କ ବିରୁଦ୍ଧରେ ଆମେରିକାନ୍ ଶାସକମାନଙ୍କ ଯୁଦ୍ଧଘୋଷଣା ବାସ୍ତବରେ ଦକ୍ଷିଣକୋରିଆର ଗଣତାନ୍ତ୍ରିକ ବିକାଶରେ କୁଠାରଘାତ କଲା । ଆମେରିକାର କର୍ତ୍ତୃପକ୍ଷ ପୁନର୍ବାର ସେହି ପୁରୁଣା ଜାପାନୀ-ଅମଳର ଶାସନକଳକୁ ଜୀବନଶକ୍ତି ଦେଲେ । ଯେଉଁମାନେ ଜାପାନୀ ଅମଳରେ କୋରିଆବାସୀଙ୍କ ଉପରେ ଅତ୍ୟାଚାର ଚଳାଇଥିଲେ, ସେହିମାନେ ପୁଣି ଶାସନକଳର ଚାଳକ ହେଲେ । ଯେଉଁସବୁ ଗଣ ଅନୁଷ୍ଠାନ କୋରିଆଜନତାକୁ ସଙ୍ଗଠିତ କରୁଥିଲେ, ସେସବୁ ସରକାରୀ ଦମନର ଶିକାର ହେଲେ । କୋରିଆର ଶ୍ରମିକ, କୃଷକ ଏବଂ ଯୁବକ-ଆନ୍ଦୋଳନ ବିରୁଦ୍ଧରେ ଆମେରିକାନ୍ ଶାସକମାନେ ଯୁଦ୍ଧଘୋଷଣା କଲେ ।

ଆମେରିକାର ପୁଞ୍ଜିପତିଙ୍କ ଦ୍ୱାରା ବହୁକାଳରୁ ପାଳିତ ଆମେରିକାରେ ଅବସର ନେଇଥିବା ସୁବିଧାବାଦୀ ବୁଢ଼ା ରାଜନୀତିଜ୍ଞ ସିଙ୍ଗମାନ୍‌ରୀଙ୍କୁ ଆମେରିକାରୁ ଆଣାଯାଇ ଦକ୍ଷିଣ କୋରିଆର ଜନତା ଉପରେ ଲଦି ଦିଆଗଲା । ଯେଉଁମାନେ ନିଜଦେଶ ପ୍ରତି ଅତୀତରେ ବିଶ୍ୱାସଘାତକତା କରିଥିଲେ, ଯେଉଁମାନଙ୍କର ସୁବିଧାବାଦ ଓ ସ୍ୱାର୍ଥପରତା ଅତି ଜଣାଶୁଣା, ସେହି ଧରଣର ରାଜନୀତିଜ୍ଞଙ୍କୁ ଆମେରିକାର କର୍ତ୍ତୃପକ୍ଷ ଦକ୍ଷିଣ କୋରିଆର ଜନନାୟକ ଭାବରେ ଗ୍ରହଣ କଲେ । କମ୍ୟୁନିଷ୍ଟ ପାର୍ଟି କିମ୍ବା ଅନ୍ୟ କୌଣସି ଜନତାର ରାଜନୈତିକ ଦଳକୁ ଆଇନସଙ୍ଗତ ଭାବରେ ଦକ୍ଷିଣ କୋରିଆରେ

କାମ କରିବାକୁ ସୁବିଧା ଦିଅଗଲା ନାହିଁ । କୋରିଅକୁ ଚିରଦିନ ନିଜର ଉପନିବେଶ କରି ରଖିବା ଅମେରିକାନ୍ ସାମ୍ରାଜ୍ୟବାଦୀଙ୍କ ଉଦ୍ଦେଶ୍ୟ, ଏହା ସେମାନଙ୍କର କାର୍ଯ୍ୟକଳାପରୁ ସ୍ପଷ୍ଟଭାବରେ ପ୍ରକାଶ ପାଇଲା । ଜାପାନୀ ସାମ୍ରାଜ୍ୟବାଦୀମାନେ କୋରିଆରେ ଯେଉଁ ସବୁ ଶିଳ୍ପ ସମ୍ପତ୍ତିର ମାଲିକ ଥିଲେ, ତାହା କୋରିଅବାସୀଙ୍କୁ ଫେରାଇଦେବା ପରିବର୍ତ୍ତେ ଅମେରିକାନ୍ କର୍ତ୍ତୃପକ୍ଷ ତାହା ଅମେରିକାର ଶିଳ୍ପପତି-ମାନଙ୍କୁ ହସ୍ତାନ୍ତର କରିଦେଲେ । ଜାପାନୀ ଶିଳ୍ପପତିଙ୍କ ପରିବର୍ତ୍ତେ ଅମେରିକାନ୍ ଶିଳ୍ପପତି କୋରିଅବାସୀଙ୍କୁ ଶୋଷଣ କରିବାକୁ ଲାଗିଲେ, ଦକ୍ଷିଣ କୋରିଅର ଅର୍ଥନୀତି ଅମେରିକାନ୍ ସାମ୍ରାଜ୍ୟ-ବାଦୀଙ୍କ ଅଧୀନସ୍ଥ ହେଲା । ଜାପାନୀ ସାମ୍ରାଜ୍ୟବାଦୀମାନେ ୧୯୦୮ରେ 'ଓରିଏଣ୍ଟାଲ ଡେଭଲପ୍‌ମେଣ୍ଟ କମ୍ପାନୀ' ପ୍ରତିଷ୍ଠା କରିଥିଲେ । ତାହା ୧୯୪୫ରେ 'ନିଉକୋରିଅ କମ୍ପାନୀ'ରେ ରୂପାନ୍ତର ହେଲା ଏବଂ ଏହାର ମାଲିକ ହେଲେ ଅମେରିକାର କେତେକ ପୁଞ୍ଜିପତି । ୧୯୦୬ରେ ଏହି କମ୍ପାନୀ ଦକ୍ଷିଣ କୋରିଅର ଶୁଷ୍କଭୂମି (ପଦର) ଶତକଡା ୬୫ ଭାଗ, ଧାନଜମିର ଶତକଡା ୮୦ ଭାଗ ଏବଂ ସାତେ ତିନିଲକ୍ଷ ଏକର ଜଙ୍ଗଲ ଜମିର ମାଲିକ ହୋଇପାରିଥିଲେ । ମୁଖ୍ୟତଃ ଜାହାଜନିର୍ମାଣ କାରଖାନା, ଲୁଗାକଳ, ଯୋଡାକଳ, ମଦକାରଖାନା ଏବଂ ଖଣି ପ୍ରଭୃତି ଶିଳ୍ପସମ୍ପଦର ଏହି କମ୍ପାନୀ ମାଲିକ ହୋଇଥିଲା ।

ଉତ୍ତରକୋରିଅକୁ ଭବିଷ୍ୟତରେ ଦଖଲ କରିବା ଆଶାରେ ଉତ୍ତର କୋରିଅର ସମସ୍ତ ଖଣିସମ୍ପଦର ପଟ୍ଟା ଅମେରିକା ପୁଞ୍ଜିପତିଙ୍କ ପ୍ରତିଷ୍ଠିତ 'ଓରିଏଣ୍ଟାଲ କନ୍‌ସଲିଡେଟେଡ୍ କମ୍ପାନୀ'କୁ ସିଙ୍ଗମାନ୍‌ରି ଦେଇଦେଇଥିଲେ । ଏହି କମ୍ପାନୀ ପୂର୍ବେ ଉତ୍ତର କୋରିଅର ସୁନାଖଣିର ମାଲିକ ହୋଇଥିଲା । ପରେ ଉତ୍ତରକୋରିଅର ଜନତାର ସରକାର ଏହି ଖଣିକୁ ଜାତୀୟ ସମ୍ପତ୍ତି କରିଥିଲେ । ବର୍ତ୍ତମାନର

ଯୁଦ୍ଧଆରମ୍ଭ ପୂର୍ବରୁ ଫିରଙ୍ଗମାନଙ୍କ ସରକାର ତରଫରୁ ହୋଇ ସମଗ୍ର କୋରିଆପାଇଁ ୨୨୦୦ଟି ଶିଳ୍ପଉଦ୍ୟମ ଆରମ୍ଭ କରିଥିଲେ । ଏ ସମସ୍ତ ଆମେରିକାନ୍ ପୁଞ୍ଜି ଏବଂ ଆମେରିକାନ୍ ନେତୃତ୍ୱରେ ପରିଚାଳିତ ହେବାର ବ୍ୟବସ୍ଥା ହୋଇଥିଲା । ଏହାପରେ ଦକ୍ଷିଣ କୋରିଆର ସମସ୍ତ ଶିଳ୍ପସମ୍ପଦ ଓ ଅର୍ଥନୀତି ଆମେରିକାର ପୁଞ୍ଜିପତିମାନେ ନିଜହାତକୁ ନେଇଯାଇଥିଲେ । ସେଥିପାଇଁ ଆମେରିକାନ୍ କାଗଜ 'ନିଉରିପବ୍ଲିକ' ୧୯୪୭ ମେ ମାସରେ ଲେଖିଥିଲା "ଆଜି କୋରିଆର ସବୁତ ଅଧିବାସୀ ଆମେରିକାର ଉଦ୍ଦେଶ୍ୟ ବୁଝି ନପାରି ଭୟ କରୁଛନ୍ତି ଯେ (କ) ସେମାନେ କୃଷି ଓ ବଡ଼ଯୋଗୀ ହତିଆର ରୂପେ ବ୍ୟବହୃତ ହେଉଛନ୍ତି, (ଖ) ଆମେରିକାର ବ୍ୟବସାୟୀମାନେ କୋରିଆର ଅର୍ଥନୀତିକୁ ପ୍ରଭୁର ନେଇଯିବେ ।"

ପ୍ରତ୍ୟେକ କାର୍ଯ୍ୟରେ ଆମେରିକାନ୍ ସାମ୍ରାଜ୍ୟବାଦୀମାନେ ନିଜର ନୀଚସ୍ୱାର୍ଥ ସାଧନପାଇଁ କୋରିଆବାସୀଙ୍କୁ ବେପରୁଆଭାବରେ ଶୋଷଣ କରିବା ମନୋଭାବ ପ୍ରକାଶ କରିବାକୁ ଲାଗିଲେ, କୋରିଆ-ବାସୀଙ୍କ ସ୍ୱାର୍ଥପ୍ରତି ନିର୍ମମ ହତାଦର ପ୍ରକାଶ କଲେ । ଜାପାନୀ ହଟି ସରିବା ପରେ, ଯେଉଁ କେତେକ ଅନାବଶ୍ୟକୀୟ ଜିନିଷ ପୂର୍ବ ଏସିଆରେ ପଡ଼ିକା ରହିଲେ ସେସବୁ ବିକି ଲାଭ ଉଠାଇବା ଉଦ୍ଦେଶ୍ୟରେ ଆମେରିକା କର୍ତ୍ତୃପକ୍ଷ ଦକ୍ଷିଣକୋରିଆକୁ ଦୁଇକୋଟି ଷାଠିଏ ଲକ୍ଷ ଡୋଲାର ଋଣ ନେବାକୁ ବାଧ୍ୟ କରି ଏହି ସବୁ ଜିନିଷ ବିକି କରିଦେଲେ । କୋରିଆର ଆବଶ୍ୟକତା ପ୍ରତି ନଜର ନ ଦେଇ ଜବରଦସ୍ତ କୋରିଆରୁ ଧାନ ଚାଲାଣି କରି ଜାପାନକୁ ପଠାଗଲା । ଫଳରେ ଦକ୍ଷିଣ କୋରିଆରେ ଖାଦ୍ୟାଭାବ ଘଟିଲା ।

ମାର୍ଶାଲ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଦକ୍ଷିଣ କୋରିଆ ସହିତ ଆମେରିକା ଯେଉଁ ଚୁକ୍ତି କଲା ତାହା ଦକ୍ଷିଣ

କୋରିଅର ଅର୍ଥନୀତିର ସର୍ବନାଶ ଘଟାଇଲା । ୧୯୪୭ରେ ଦକ୍ଷିଣ କୋରିଅରେ ଛୋଟବଡ଼ କାରଖାନା ଓ କାର୍ଯ୍ୟାଳୟର ସଂଖ୍ୟା ଦଶହଜାର ଥିଲା । ଏହି ଚୁକ୍ତି ଫଳରେ ୧୯୪୭ ବେଳକୁ ସେସବୁର ସଂଖ୍ୟା ଚାରିହଜାରକୁ କମିଯାଇଥିଲା । ୧୯୫୦ର ଅବସ୍ଥା ଏହା ଅପେକ୍ଷା ଢେର୍ ଅଧିକ ଶୋଚନୀୟ । ୧୯୪୭ରେ କେବଳ କାରଖାନାମାନଙ୍କ ସଂଖ୍ୟା ୬୧୧ ଥିଲା ଏବଂ ସେସବୁରେ ୨୭,୩୩୧ ଜଣ ଶ୍ରମିକ ନିଯୁକ୍ତ ହୋଇଥିଲେ । କିନ୍ତୁ ଆମେରିକାନ୍ ଶାସନର ଏକବର୍ଷ ପରେ ଏହି ସଂଖ୍ୟାରେ ଶତକଡ଼ା ୪୦ କମିଯାଇଥିଲା । ସ୍ୟୁଂପୁଙ୍ଗ୍ ଜିଲ୍ଲାର ହିସାବରୁ ଜଣାଯାଏ ଯେ ୧୯୫୧ ବେଳକୁ କେବଳ ଶତକଡ଼ା ୫ଟି କାରଖାନା ରହିଥିଲା । ଅନ୍ୟସବୁ ବାଧ୍ୟହୋଇ ବନ୍ଦ ହୋଇଯାଇଥିଲା । ଦେଶର କଳକାରଖାନା ବନ୍ଦ ହେଲାବେଳେ, ଏଣେ ଆମେରିକାରୁ ଆସିବା ଜିନିଷର ପରିମାଣ ଖୁବ୍ ବଢ଼ିଥିଲା । ୧୯୪୮ରେ ଆମେରିକାରୁ ୧୮୯୦ଲକ୍ଷ ଡୋଲାର ମୂଲ୍ୟର ଜିନିଷ କୋରିଆ ଭିତରକୁ ଆସିଥିଲା । ଆମେରିକାର କର୍ତ୍ତୃପକ୍ଷ ସାର ଉତ୍ପାଦନ ବନ୍ଦ କରିଦେଇ ଆମେରିକାରୁ ସାଢେ ତିନିକୋଟି ଡୋଲାର ମୂଲ୍ୟର ସାର କୋରିଅକୁ ଆଣିଛନ୍ତି । ଆମେରିକା ପୁଞ୍ଜିପତିଙ୍କ ସ୍ୱାର୍ଥସାଧନ ପାଇଁ ଦକ୍ଷିଣ କୋରିଅର କଳକାରଖାନା ବନ୍ଦ କରାହୋଇଛି । ଏହା ଫଳରେ ବେକାର ସମସ୍ୟା ଅତି ଉତ୍କଟଆକାର ଧାରଣ କରିଛି ।

ପୃଥିବୀ ଶ୍ରମିକସଂଘର ପ୍ରତିନିଧିମାନେ ଦକ୍ଷିଣକୋରିଅ ପରିଭ୍ରମଣ କରି ଯେଉଁ ରିପୋର୍ଟ ଦେଇଛନ୍ତି ସେଥିରେ ଲେଖିଛନ୍ତି ଯେ ସାଧାରଣ ଶ୍ରମିକମାନେ ଦଶ ଘଣ୍ଟାରୁ ଚଉଦ ଘଣ୍ଟାଯାଏ ଦୈନିକ କାମ କରନ୍ତି । ଯାନବାହାନର ଶ୍ରମିକମାନଙ୍କୁ ସାପ୍ତାହିକ ୮୦ ଘଣ୍ଟା କାମ କରିବାକୁ ପଡେ ଏବଂ ସେଓଲ ନିକଟର ଏକ ଲୁଗାକଳରେ

ଶ୍ରମିକମାନେ ସାପ୍ତାହିକ ୯୦ ଘଣ୍ଟା କାମ କରନ୍ତି । ଏହି କାରଖାନାରେ ମଧ ଶ୍ରେଷ୍ଠ ବାଳିକା କାମରେ ନିଯୁକ୍ତ ହୁଅନ୍ତି । ଜାପାନୀ ଅମଳଠାରୁ ଶ୍ରମିକମାନଙ୍କ ଅବସ୍ଥା ଅଉରି ଅଧିକ ଶୋଚନୀୟ ହୋଇଛି । ମିଳିତ ଜାତି ସଂଘର କୋରିଆ କମିଶନର ରିପୋର୍ଟରେ ପ୍ରକାଶ ପାଇଛି, ୧୯୪୫ଠାରୁ ୧୯୫୮ ଭିତରେ ଜିନିଷମୂଲ୍ୟ ୨୦ ଗୁଣ ବଢ଼ିଛି, କିନ୍ତୁ ମଜୁରି ସାଢ଼େ ସାତଗୁଣ 'ବଢ଼ିଛି । ଦକ୍ଷିଣ କୋରିଆର ପ୍ରତିକ୍ରିୟାଶୀଳ କାଗଜ 'କ୍ୟୁଂ ହିଅଁ ସିନ୍ ଉନ୍' ଲେଖିଛି, ୧୯୩୬ ତୁଳନାରେ ଦରଦାମ ୮୦୦ ଗୁଣ ବଢ଼ିଛି କିନ୍ତୁ ମଜୁରି କେବଳ ୧୬୦ରୁ ୧୯୦ ଗୁଣ ବଢ଼ିଛି, ଅର୍ଥାତ ପ୍ରକୃତ ମଜୁରି ୪।୫ ଗୁଣ କମିଛି । ଅନ୍ୟ ଏକ ପ୍ରତିକ୍ରିୟାଶୀଳ କାଗଜ 'ଏନ୍ ହାପ୍ ସିନ୍ ମୁନ୍' ସ୍ୱୀକାର କରନ୍ତି ଯେ ସେଓଲ୍ ନିକଟରେ ୨୭୦ କାରଖାନାରୁ କେବଳ ୧୦ଟି କାରଖାନା ଠିକ୍ ସମୟରେ ମଜୁରି ଦିଅନ୍ତି ।

ଶିଶୁଙ୍କୁ କାର୍ଯ୍ୟରେ ନିଯୁକ୍ତ କରିବା ଅନ୍ତର୍ଜାତିକ-ବିଧାନ ଅନୁସାରେ ଗର୍ହିତ ଦୋଷ । କିନ୍ତୁ ଦକ୍ଷିଣ କୋରିଆରେ ଶିଶୁଶ୍ରମ କଳକାରଖାନାରେ ବ୍ୟବହାର କରାଯାଏ । ଏହି ସମ୍ପର୍କରେ ଆମେରିକା ସରକାରଙ୍କ ଶ୍ରମିକ ସେକ୍ରେଟରୀଙ୍କ କାଗଜ 'ମନ୍ଥଲି ଲେବର୍ ରିଭ୍ୟୁ' ୧୯୪୯ ଏପ୍ରିଲ ସଂଖ୍ୟାରେ ଏକ ସମ୍ବାଦ ଦେଇଛି । ଏହି ସାମ୍ରାଜ୍ୟବାଦୀ ପତ୍ରିକା କାରଣ ଦେଖାଇଛି, କୋରିଆର ସାବାଳକ ମାନେ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାପାଇଁ ଅମଙ୍ଗ ହେଉଥିବାରୁ ବାଳକବାଳିକାମାନଙ୍କୁ ଏହିସବୁ କାର୍ଯ୍ୟରେ ନିଯୁକ୍ତ କରାଯାଉଛି । ଉତ୍ତରକୋରିଆର ଉଦାହରଣରୁ ଏହି କାରଣର ଅଯଥାର୍ଥତା ପ୍ରମାଣିତ ହେଉଛି । ଏହି ପତ୍ରିକା ସ୍ୱୀକାର କରିଛି, ଦକ୍ଷିଣ କୋରିଆ ଶ୍ରମିକର ମଙ୍ଗଳ ପାଇଁ କୌଣସି ନିରାପତ୍ତା ବା ସାମାଜିକ

ସ୍ୱୀକାର ବ୍ୟବସ୍ଥା କରାଯାଇ ନାହିଁ । ଶ୍ରମିକମାନଙ୍କର ଧର୍ମଘଟ କରିବାର ଅଧିକାର ମଧ୍ୟ ନାହିଁ । ଏହି ପତ୍ରିକାରେ ପୁଣି ପ୍ରକାଶ ପାଉଛି, ଦକ୍ଷିଣ କୋରିଆର ଶ୍ରମିକମାନେ ରାଜନୀତି ପ୍ରତି ଅଗ୍ରହ ଦେଖାଉ ଥିବାରୁ ସେମାନଙ୍କର ସଂଗଠନ କରିବାର ଅଧିକାର ମଧ୍ୟ ଛଡ଼ାଇ ନିଆଯାଇଛି । ସଭାସମିତି କରିବା ପାଇଁ ସେମାନଙ୍କୁ ଅନୁମତି ମିଳୁନାହିଁ । ୧୯୪୬ରେ କୋରିଅର ଶ୍ରମିକସଂଘକୁ ବେଆଇନ୍ କରାଗଲା ଏବଂ ତାହାର ଅନେକ ନେତା ଗିରଫ ହୋଇ ଜେଲ ଭୋଗିଲେ ।

୧୯୪୬ରେ ପୃଥିବୀ ଶ୍ରମିକ ସଂଘର ଏକ ପ୍ରତିନିଧିଦଳ କୋରିଆ ପରିଭ୍ରମଣ କରିବାକୁ ଯାଇଥିଲେ । ଗୋଟିଏ ଲୁଗାକଳ ପରିଦର୍ଶନ କଲାବେଳେ ସେଠାର ଶ୍ରମିକମାନେ ପ୍ରତିନିଧିଦଳକୁ ସ୍ୱାଗତ ଜଣାଇବାରୁ ସେମାନଙ୍କୁ ଜାପାନୀପୋଷାକ ପରିଧାନ କରିଥିବା କାରଖାନା ପୋଲିସ୍ ପରିଦର୍ଶକମାନଙ୍କ ଆଗରେ ମାଡ଼ଦେବାକୁ ଲାଗିଲେ । ପ୍ରତିନିଧିଦଳ ଏହାର ପ୍ରତିବାଦ କରିବାରୁ ସଶସ୍ତ୍ର ପୋଲିସ୍ ତାଙ୍କୁ ଧମକ ଦେଇଥିଲେ ଏବଂ କେତେକ ଫାସିଷ୍ଟ ଗୁଣ୍ଡା ସେମାନଙ୍କୁ ଆକ୍ରମଣ କରିଥିଲେ । ସରକାରର ଶ୍ରମିକମାନଙ୍କ ପ୍ରତି ବ୍ୟବହାର ଏଥିରୁ ସ୍ପଷ୍ଟ ପ୍ରକାଶ ପାଉଛି ।

ଦକ୍ଷିଣ କୋରିଆର ଅବସ୍ଥା ଦିନକୁ ଦିନ ଅଧିକରୁ ଅଧିକ ଶୋଚନୀୟ ହେଉଥିବା କଥା ସିଙ୍ଗମାନରୀର ନିଜ କାଗଜ—'ଏନ୍ ହାମ୍ ସିନ୍ ମୁନ୍' ମଧ୍ୟ ସ୍ୱୀକାର କରିଛି । ୧୯୪୯ ଜୁନ୍ ପହିଲାରେ ଏହି କାଗଜ ଲେଖିଛି, ଶିଳ୍ପମାନଙ୍କର ଅବସ୍ଥା ଅତି ସାଙ୍ଘାତିକ । ଶିଳ୍ପକେନ୍ଦ୍ର ଏଣ୍ଡ୍ରୁମ୍ ଅଞ୍ଚଳରେ ୨୦୦ କାରଖାନା ଭିତରୁ କେବଳ ୫୫ଟି ଚାଲୁଛି, ଅନ୍ୟ ସବୁ ବନ୍ଦ ଏବଂ ଏମାନଙ୍କ ଭିତରୁ କେବଳ ୧୦ଟି ନିୟମିତ ଭାବରେ କାମ କରନ୍ତି, ନିର୍ଦ୍ଦିଷ୍ଟ ମଜୁରୀ ନଗଦ

ମୁଦ୍ରାରେ ନିଜ ଶ୍ରମିକମାନଙ୍କୁ ଦିଅନ୍ତି । ଏହି କାଗଜ ପୁଣି ଲେଖିଛି, "ପ୍ରଧାନ ଶିଳ୍ପମାନଙ୍କର ଶ୍ରମିକମାନଙ୍କ ଜୀବନ ନିର୍ବାହ ଅବସ୍ଥା ଏକାବେଳେକେ ବର୍ଣ୍ଣନାତୀତ । × × × ଶ୍ରମିକମାନେ ଅତି ସାଂଘାତିକ ଅବସ୍ଥାରେ ଅଛନ୍ତି । କଳ୍ପନା କରି ହେଉନାହିଁ ଏମାନେ କପରି ବଞ୍ଚିବେ ।"

ଦକ୍ଷିଣ କୋରିଆର ଶୋଷକ ଅତ୍ୟାଗ୍ରହୀ ବ୍ୟକ୍ତିଙ୍କର ସାହାଯ୍ୟ ଉପରେ ଆମେରିକାର ଶାସନ ନିର୍ଭର କରୁଥିବା ହେତୁ ଜମିଜମା ସଂସ୍କାର ସମ୍ଭବ ହୋଇପାରିଲା ନାହିଁ । ସାମନ୍ତବାଦୀ ଶୋଷଣ, ଜମିଦାରୀ ଅତ୍ୟାଗ୍ରହ, ସାଧାରଣ କୃଷୀର ଅବସ୍ଥାକୁ ଅଧିକରୁ ଅଧିକ ଶୋଚନୀୟ କରିବାକୁ ଲାଗିଲା । ଏହି ସମ୍ପର୍କରେ ସିଙ୍ଗମାନ୍ ରୀର କାଗଜ ଜୁନ ୧୬, ୧୯୫୯ରେ ଲେଖିଛି, "କୃଷି ଉତ୍ପାଦନ ଅଧିକ ବଢ଼ାଇବା ପ୍ରଶ୍ନହିଁ ଉଠୁନାହିଁ । କୃଷୀମାନେ, ସେମାନଙ୍କର ଛୋଟ ଛୋଟ ଜମିଖଣ୍ଡ ଯେନତେନ ପ୍ରକାରେ ବଞ୍ଚି ରହିବାପାଇଁ କୃଷି କରୁଛନ୍ତି, କାରଣ ମରିବା କଷ୍ଟକର । ଯାହା ବନ୍ଧକ ଦେବା କଥା, ସେସବୁ ବନ୍ଧା ଦେଇଦେଉଛନ୍ତି, ଶତକଡ଼ା ୧୦ ଠାରୁ ୨୦ ହାରରେ ଚଢ଼ା କଳାନ୍ତରରେ ଋଣ କରିବାରେ ଲାଗିଛନ୍ତି ।" ଦକ୍ଷିଣ କୋରିଆର କୃଷକ ଅବସ୍ଥା ଏପରି ଅସହନୀୟ ହୋଇଉଠିଲା ଯେ ସିଙ୍ଗମାନ୍ ରୀର ନିଜ କାଗଜ ମଧ୍ୟ ତାହା ପ୍ରକାଶ କରିବାକୁ ବାଧ୍ୟ ହେଲା । ସାମ୍ରାଜ୍ୟବାଦୀ ଶୋଷଣ, ସାମ୍ରାଜ୍ୟବାଦୀ ଦଲାଲଙ୍କ ଲୁଣ୍ଠନ ଦକ୍ଷିଣ କୋରିଆର ଅର୍ଥନୀତିକୁ ଏକାବେଳେକେ ଭାଙ୍ଗିଦେଲା । ତେଣୁ ଶାସକମାନଙ୍କର ନିଜ କାଗଜ ବିଜ୍ଞପ୍ତି ବେଦନ କରିବାକୁ ବାଧ୍ୟ ହୋଇଛି ।

ଯେତେବେଳେ ସାମ୍ରାଜ୍ୟବାଦୀ ଶୋଷଣକୁ ରକ୍ଷା କରିବା ଶାସନର ଲକ୍ଷ୍ୟ, ସରକାର ଜନହିତ୍ତା ନୀତି ନେବାକୁ ବାଧ୍ୟ ।

ସେଥିଯୋଗୁଁ ନାଗରିକ ସ୍ୱାଧୀନତାକୁ ହତ୍ୟା କରାଯାଉଛି, ବର୍ବର ଅମାନୁଷିକ ଅତ୍ୟାଚାରର ଦକ୍ଷିଣ କୋରିଅରେ ଅତି ସାଧାରଣ ଘଟଣା ହୋଇଛି । ସରକାରର ଜନସାଧାରଣଙ୍କୁ ଭୟ ତାର ଫାସିଷ୍ଟ ଅଭିନଳୁ ଜଣାପଡୁଛି । ରାଜନୈତିକ ବିରୋଧୀଙ୍କୁ ଜବତ କରିବା ପାଇଁ ସିଙ୍ଗ୍‌ମାନ୍‌ରିର ଶାସନ ଏକ ତଥାକଥିତ "ପରସ୍ପର ଦାୟିତ୍ୱ" ପ୍ରଣାଳୀ ଜାରିକଲା । ପାଖପଡ଼ୋଶୀ ୪।୫ଟି ଘରର ପ୍ରତ୍ୟେକ ବ୍ୟକ୍ତି ଏହି ପରସ୍ପର ଦାୟିତ୍ୱ' ପ୍ରଣାଳୀ ଭିତରେ ଅନ୍ତର୍ଭୁକ୍ତ ହେବାକୁ ବାଧ୍ୟ । ଏହି ପ୍ରଣାଳୀରେ ଅନ୍ତର୍ଭୁକ୍ତ ଯେକୌଣସି ବ୍ୟକ୍ତି ବା ପରିବାରର କାର୍ଯ୍ୟପାଇଁ ପ୍ରଣାଳୀର ସମସ୍ତ ସଭ୍ୟ ଦାୟୀ । ତେଣୁ ପ୍ରତ୍ୟେକେ ପ୍ରତ୍ୟେକର ବିରୋଧରେ ଗୋଇନ୍ଦାର କାର୍ଯ୍ୟ କରିବେ, ନଚେତ୍ ନିଜ ପ୍ରଣାଳୀର କୌଣସି ବ୍ୟକ୍ତି ବା ପରିବାରର କାର୍ଯ୍ୟ ଦୋଷାବହ ବିବେଚିତ ହେଲେ ସମସ୍ତେ କଠୋରଦଣ୍ଡ ଭୋଗିବେ । ଏହି ବର୍ବର ପ୍ରଥା ଦୁନିଆର ଅନ୍ୟ କୌଣସିଠାରେ ଦେଖାନଥିଲା ।

କୌଣସି ଅଞ୍ଚଳରେ ଗରିଲା ଆନ୍ଦୋଳନର ସୂଚନା ମିଳିଲେ ସେହି ଅଞ୍ଚଳର ସମସ୍ତ ଅଧିବାସୀଙ୍କୁ ନିଜର ବାସଭୂମିରୁ ମୂଳୋତ୍ପାଟନ କରି ଅନ୍ୟତ୍ର ବାହାରି ଯିବାପାଇଁ ବାଧ୍ୟ କରାଯାଉଥିଲା । "ବେଙ୍ଗଭ୍ରି" ଅଞ୍ଚଳର ଆଠଟି ଜିଲ୍ଲାର ସମସ୍ତ ଅଧିବାସୀଙ୍କୁ ଏହିପରି ବାସଭୂମି ଛାଡ଼ି ଚାଲିଯିବାକୁ ଆଦେଶ ହୋଇଥିଲା । ଆଦେଶ ଅମାନ୍ୟ କଲେ ଗୁଳି କରାଯିବାର ଧମକ ମଧ୍ୟ ଦିଆଯାଇଥିଲା । ଏହି ଅନ୍ୟାୟ ଆଦେଶର ପ୍ରତିବାଦ ସିଙ୍ଗମାନ୍‌ରି ଦଳର କେତେକ ସଭ୍ୟ ମଧ୍ୟ କରିଥିଲେ ।

ଅମେରିକାର ତଥାକଥିତ ଗଣତାନ୍ତ୍ରିକ ଶାସନର ବାହୁଛାୟା ତଳେ କୋରିଅରେ ଦମନର ଯେଉଁ ବିଭୀଷିକା ଚାଲିଲା, ତାର କିଞ୍ଚିତ ଆଭାସ ନିମ୍ନ ହିସାବରୁ ମିଳିବ । ୧୯୪୫ରେ ୧୫ ଜଣ କୋରିଆ ଦେଶପ୍ରେମୀଙ୍କୁ ହତ୍ୟା କରାଯାଇଥିଲା । ୧୯୪୬ରେ

୪୨୦୦ ଦେଶପ୍ରେମୀଙ୍କୁ ହତ୍ୟାକରାଗଲା । ୧୯୪୭ରେ ୩୮୦୦ ଜଣଙ୍କୁ ମରଣମୁହଁକୁ ଠେଲି ଦିଆଗଲା । ୧୯୪୮ରେ ୩୨୦୦୦ ବ୍ୟକ୍ତିଙ୍କୁ ହତ୍ୟା କରାଯାଇଛି । ୧୯୪୯ରେ ୫୩୦୦୦ ମରିଛନ୍ତି । ଏହାପରେ ୧୯୪୯ର ଶେଷଭାଗକୁ ୯୩,୦୦୦ କୋରିଆର ଦେଶପ୍ରେମୀ ଆମେରିକାର ଗଣତାନ୍ତ୍ରିକ ଶାସନର ଶିକାର ହୋଇଛନ୍ତି । ୧୯୪୯ର ଶେଷବେଳକୁ ଦେଢ଼ଲକ୍ଷରୁ ଊର୍ଦ୍ଧ୍ୱ ଦେଶପ୍ରେମୀ ଦକ୍ଷିଣକୋରିଆର ଜେଲମାନଙ୍କରେ ସଢ଼ୁଥିଲେ । ଜେଲରେ ସ୍ଥାନାଭାବ ହେବାରୁ ସିଙ୍ଗମାନ୍‌ରୀ ନୂଆ ନୂଆ ଜେଲଖାନା ତିଆରି କରିବାରେ ଲାଗିଥିଲା । ଅଇନ କମିଶନ୍‌ର ରିପୋର୍ଟରେ ପ୍ରକାଶ ପାଉଛି ଯେ ୩.୩ ବର୍ଗମିଟର୍ ସ୍ଥାନରେ ୬ ଠାରୁ ୮ ଜଣଯାଏ ବନ୍ଦୀଙ୍କୁ ରୁନ୍ଧ ଦିଆଯାଉଥିଲା । ଦମନ କରି ସ୍ୱାଧୀନତା ପିପାସୀ କୋରିଅବାସୀଙ୍କର ପ୍ରତିରୋଧକୁ ଦବାଇ ପାରିନଥିଲା । ଧର୍ମଘଟ, ଗଣତାବନ୍ଦ ଏବଂ ଗରିଲା ଯୁଦ୍ଧରେ ଜନସାଧାରଣଙ୍କ ବିକ୍ଷୋଭ ପ୍ରକାଶ ପାଇବାକୁ ଲାଗିଲା ।

ସାମ୍ରାଜ୍ୟବାଦୀଙ୍କ ଦୃଷ୍ଟିକୋଣରୁ ମଧ୍ୟ ଆମେରିକାର କୋରିଅନୀତି ଯେ ବିଫଳ ହୋଇଛି, ତାହା ଆମେରିକାର ଶାସକ ଗୋଷ୍ଠୀର କେତେକ ଦୂରଦର୍ଶୀ ଲକ୍ଷ୍ୟ କରିପାରିଛନ୍ତି । ବିଶେଷ ଭାବରେ ପ୍ରାଚ୍ୟ ଅଞ୍ଚଳ ସମ୍ବନ୍ଧରେ ପରିଚିତ, ଶାସକଗୋଷ୍ଠୀର ପ୍ରାଚ୍ୟ-ବିଶେଷଜ୍ଞ, ରୁଜଭେଲ୍ଟଙ୍କ ଦ୍ୱାରା ଚ୍ୟାଙ୍ଗକାଇଶେକ୍‌ର ଯୁଦ୍ଧକାଳୀନ ପରାମର୍ଶଦାତା ରୂପେ ନିଯୁକ୍ତ ଓଏନ୍ ଲଟିମର୍ ସୁଦୂର ପ୍ରାଚ୍ୟ ସମ୍ପର୍କରେ ବାରଖଣ୍ଡ ଗ୍ରନ୍ଥ ଲେଖିଛନ୍ତି । ତାଙ୍କର ନୂତନତମ ଗ୍ରନ୍ଥ 'ଏସିଅର ପରିସ୍ଥିତି' ୧୯୪୯ରେ ପ୍ରକାଶ ପାଇଛି । ସେଥିରେ ସେ ଆମେରିକା ସରକାରର କୋରିଅନୀତିର ତୀବ୍ର ସମାଲୋଚନା କରିଛନ୍ତି ।

ସେ ଲେଖିଛନ୍ତି, ଅମେରିକା ଦକ୍ଷିଣ କୋରିଆରେ ପ୍ରଗତିବାଦୀଙ୍କୁ ଶାସନକ୍ଷମତାରୁ ଦୂରରେ ରଖିବା ପାଇଁ ଦୁଇପ୍ରକାରର ଲୋକଙ୍କ ସହିତ ସହଯୋଗ କରୁଛି । ପ୍ରଥମ ଧରଣର ହେଉଛି, ପୂର୍ବେ ଯେଉଁମାନେ ଦେଶରୁ ନିର୍ବାସିତ ହୋଇ ବାହାରେ ରହୁଥିଲେ, ଦ୍ୱିତୀୟ ଧରଣର ସହଯୋଗୀ ହେଉଛନ୍ତି ପୂର୍ବର ଜାପାନ-ସହଯୋଗୀ ବ୍ୟକ୍ତି । "ଏହି ଜାପାନ-ସହଯୋଗୀମାନଙ୍କୁ କୋରିଅବାସୀ ଘୃଣା କରନ୍ତି । କିନ୍ତୁ ଅମେରିକାନ୍‌ମାନଙ୍କ ଆଖିରେ ଏମାନଙ୍କର ଏକ ଧରଣର ସନ୍ଦେହଜାତକାରୀ ସମ୍ମାନ ରହିଛି । କାରଣ, ଘୃଣା କରାଯାଉଛି ଜାପାନୀମାନଙ୍କ ସହିତ ସହଯୋଗ କରିଥିବା ଯୋଗୁଁ ଏମାନେ ଜନସାଧାରଣଙ୍କୁ ଦମନ କରିବା ଉପାୟ ଜାଣନ୍ତି । ଜନସାଧାରଣ ଯଦି ରୁଷିଆ ଆଡ଼କୁ ବିଶେଷ ଭାବରେ ଢଳିପଡ଼ନ୍ତି, ସେମାନେ ନିଶ୍ଚୟ ବିପଜ୍ଜନକ ହେବେ ।" (୧୬ ପୃଷ୍ଠା)

ତାପରେ ଲଟିମର୍ ଲେଖିଛନ୍ତି, ଜାପାନୀମାନେ ଗୁଳିପିବା ପରେ କୃଷକମାନେ ଯେଉଁସବୁ ଜମି ଦଖଲ କରି ଯାଇଥିଲେ, ତାହା ସେମାନଙ୍କ ହାତରୁ ଅମେରିକାର ଶାସକମାନେ ଛଡ଼ାଇ ଆଣି ଜମିଦାରମାନଙ୍କୁ ଫେରାଇଦେଇଛନ୍ତି ଏବଂ କୃଷିମାନଙ୍କୁ ପୁନର୍ବାର ଦାସଭାବରେ ରହିବାକୁ ବାଧ୍ୟ କରିଛନ୍ତି । ଏହା ଫଳରେ ଦକ୍ଷିଣ କୋରିଅରେ ଧାରଣା ଜନ୍ମିଛି, "ପୂର୍ବେ ଯେଉଁମାନେ ଜାପାନର ବନ୍ଧୁ ଥିଲେ, ସେମାନେ, ବର୍ତ୍ତମାନ ଅମେରିକାର ବନ୍ଧୁ । ଦକ୍ଷିଣ କୋରିଆ ଉତ୍ତର କୋରିଆ ସହିତ ମିଶି ଏକଜାତି ଭାବରେ ଛିଡ଼ା ହେବାକୁ ହେଲେ, ଏମାନଙ୍କୁ ତଡ଼ିବାକୁ ପଡ଼ିବ ।"

ଲଟିମର୍ ଅମେରିକାନ୍‌ମାନଙ୍କର କୃଷକମାନଙ୍କ ପ୍ରତି ବ୍ୟବହାର ସହିତ ରୁଷିଅନ୍‌ମାନଙ୍କର ବ୍ୟବହାର ତୁଳନା କରି ଲେଖିଛନ୍ତି, କୃଷକ-ସମିତି ଗଢ଼ି ସମବାୟ ସୂତ୍ରରେ କୃଷି କରିବାରେ

ସାହାଯ୍ୟ କରି ରୁଷିଆନ୍‌ମାନେ କୃଷକମାନଙ୍କ ହାତରେ ଜମି ରହିବାର ସୁବ୍ୟବସ୍ଥା କରିଦେଲେ । "ଚେଠ କୋରିଆନ୍‌ମାନେ ଅଇନଗତ ଓ ରାଜନୈତିକ ଚାଲବାଜି ଖେଳ ଚାଷୀଙ୍କୁ ଋଣରେ ବୁଡ଼ାଇ ଜମିରୁ ତଡ଼ିବା ଜାଣନ୍ତି, ସେମାନଙ୍କର କ୍ଷମତା ରୁଷିଆନ୍‌ମାନେ ଲୋପ କରିଦେଲେ ।" ଲଟିମର୍ ଲେଖିଛନ୍ତି, ଏହି ଧରଣର କ୍ଷମତାଚ୍ୟୁତ କୋରିଆନ୍‌ମାନେ ଦକ୍ଷିଣକୋରିଆକୁ ଚାଲିଆସୁଛନ୍ତି, କାରଣ ଏହିଧରଣର ଲୋକମାନେ ଆମେରିକାନ୍‌ମାନଙ୍କ ଦ୍ୱାରା ସାହାଯ୍ୟ ଓ ସମର୍ଥନ ପାଇ ରାଜନୈତିକ ଓ ଅର୍ଥନୈତିକ ଘାଟିସ୍ଥଳ ଦଖଲ କରିପାରୁଛନ୍ତି ।

ଉତ୍ତରରେ କଳକାରଖାନାର ଜାତୀୟକରଣ ହେଲା ଏବଂ ଏହି କାର୍ଯ୍ୟରେ ସୋଭିଏଟ୍ ଇଉନିଅନ୍‌ଠାରୁ ଉତ୍ତରକୋରିଆ ସକଳପ୍ରକାର ସାହାଯ୍ୟ ପାଇଲା । ଲଟିମର୍ ଲେଖିଛନ୍ତି, ରୁଷିଆ ଯେ କେବଳ ଶ୍ରମିକସଂଘ ଗଢ଼ିବାରେ ସାହାଯ୍ୟ କଲା, ତାହାନୁହେଁ; "କାରିଗରମାନଙ୍କୁ ବାହାରୁ ଆଣିଲା ଏବଂ କୋରିଆନ୍‌ମାନଙ୍କୁ ଜାତୀୟକରଣ ବ୍ୟବସ୍ଥାରେ ଶିଳ୍ପ ପରିଚାଳନାର ଶିକ୍ଷା ଦେଲା ।"

କୃଷକମାନଙ୍କୁ ଭିତ୍ତି କରି କୋରିଆରେ ଏକ ଜାତୀୟ ବାହିନୀ ଗଢ଼ିବାରେ ସୋଭିଏଟ୍ ୟୁନିଅନ୍ ସାହାଯ୍ୟ କରିଛି । ଚାଷୀମାନେ ବୁଝିପାରିଛନ୍ତି, "ନିଜର ଜମିକୁ ରକ୍ଷା କରିବାକୁ ହେବ, ଏବଂ ଶିଳ୍ପଶ୍ରମିକମାନେ ବୁଝୁଛନ୍ତି ଯେ ନୂଆ ସରକାର ତାଙ୍କର ନିଜର, ଯେହେତୁ ଏହା ସେମାନଙ୍କର ଅଧିକାରକୁ ରକ୍ଷା କରିବାର ଭିତ୍ତି ଉପରେ ଗଢ଼ାହୋଇଛି ।" ସେଥିପାଇଁ ଲଟିମର୍ ବିଶ୍ୱାସ କରନ୍ତି, ଉତ୍ତରକୋରିଆ ସୈନ୍ୟ ନିର୍ଭରଯୋଗ୍ୟ ଏବଂ ଉତ୍ତରକୋରିଆ ଆପଦଗ୍ରସ୍ତ ହେଲେ ଏମାନେ ଜୀବନପଣ ଲଢ଼େଇ କରିବେ । ଲଟିମରଙ୍କ ମତରେ ଆମେରିକାନ୍‌ମାନେ ଦକ୍ଷିଣ କୋରିଆରେ

ଏବ ଜାତୀୟ ବାହିନୀ ଗଢିନାହାନ୍ତି; "କେବଳ ଚୋଟିଏ ପୋଲିସ୍‌ସେନା ଗଢିଛନ୍ତି, ଯାହାର ମୁଖ୍ୟଅଂଶ ଜାପାନୀ ଅଧୀନରେ ଚାକିରୀ କରୁଥିଲେ । ସମସ୍ତ ଜାପାନ-ସହଯୋଗୀ ଭିତରେ ସେମାନେ ସବୁଠାରୁ ଜନସାଧାରଣଙ୍କ ଦ୍ୱାରା ଦେଶଦ୍ରୋହୀ ବୋଲି ବିବେଚିତ ହୁଅନ୍ତି ।" (୯୬ ପୃଷ୍ଠା)

ସିଙ୍ଗମାନ୍‌ରୀ ସମ୍ପର୍କରେ ଲତିମର୍ ଲେଖିଛନ୍ତି, "ସେ ନିଜକୁ କଳଙ୍କିତ କରିଛନ୍ତି, ଜାପାନ ସହଯୋଗୀମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପନ କରି । ଏହି ବ୍ୟକ୍ତିମାନେ ଅସାମ୍ପ୍ରଦାୟିକ ଅସାଧୁ ସୁବିଧାବାଦୀ ଏବଂ ଜାପାନ ସହିତ ସହଯୋଗ ଫଳରେ ଅବସ୍ଥାପନ୍ନ ହୋଇ ପାରିଛନ୍ତି ।" (୯୬ ପୃଷ୍ଠା) । ତେଣୁ ଲତିମର୍ ଲେଖିଛନ୍ତି, "ସରକାରକୁ ଜନସାଧାରଣ ବିଶ୍ୱାସ କରୁ ନାହାନ୍ତି । ଏହି ସରକାର ନିର୍ଭରଯୋଗ୍ୟ ନୁହେଁ । ନିଜର ଶକ୍ତିଉପରେ ସରକାର ନିର୍ଭର କରୁନାହିଁ । ଅମେରିକା ବରାବର ଦେଶକୁ ଦଖଲ କରି ରହୁ ଏବଂ ତାହାକୁ ସାହାଯ୍ୟ କରୁ, ଏଥିପାଇଁ ଏହି ସରକାର ସବୁବେଳେ ଅବେଦନ କରୁଛି ।" (୯୬ ପୃଷ୍ଠା) ।

ତାପରେ ସେ ଭବିଷ୍ୟତଦର୍ଶୀ ଭାବରେ ଲେଖିଛନ୍ତି "ଯଦି ଗୃହଯୁଦ୍ଧ ହୁଏ ଅମେରିକା ବର୍ତ୍ତମାନ ଯେପରି ସାହାଯ୍ୟ କରୁଛି, ତାହାଠାରୁ ଯଥେଷ୍ଟ ବେଶୀ ସାହାଯ୍ୟ ନକଲେ ଦକ୍ଷିଣକୋରିଆ ଉତ୍ତରକୋରିଆକୁ ଜବତ କରିପାରିବନାହିଁ । ଉତ୍ତରକୋରିଆ ରୁଷିଆଠାରୁ କୌଣସି ସାହାଯ୍ୟ ନପାଇ ମଧ୍ୟ ଦକ୍ଷିଣକୋରିଆକୁ ସହଜରେ ଦଖଲ କରିପାରିବ, ଯଦି ଅମେରିକାର ଲଢୁଆ ସୈନ୍ୟମାନେ ତାହାକୁ ବାଧା ନକରନ୍ତି । ଅମେରିକା କୋରିଆରେ ତାର କୁମିଙ୍ଗ୍‌ଟାଙ୍ଗ୍ (ଚ୍ୟାଙ୍ଗ୍‌କାଇସେକ୍ ଦଳ) ଗଢିଛି । ପୃଥିବୀର ଗୃହଅଢେ 'ପୋଲିସ୍-ରାଷ୍ଟ୍ର' ମାନଙ୍କ ବିରୁଦ୍ଧରେ ଲଢିବା

ଅମର ଯେଉଁ ନୀତି ଘୋଷିତ ହେଉଛି, ସେହି ନୀତିକୁ ସମର୍ଥନ କରିବା ଉଦ୍ଦେଶ୍ୟରେ ଦକ୍ଷିଣକୋରିଆରେ ଆମେ ଏକ ଦୁର୍ବଳ ନିର୍ଭର-ଅଯୋଗ୍ୟ ପୋଲିସ୍‌ବାହିନୀ ଗଢ଼ିବସିଛୁ ।"

ଆମେରିକା ଶାସକଗୋଷ୍ଠୀର ଏହି ନେତୃସ୍ଥାନୀୟ ବିଶେଷଜ୍ଞ କୋରିଅର ଯେଉଁ ଛବି ଦେଇଛନ୍ତି, ସେଥିରେ କୌଣସି ଅତିରଞ୍ଜନ ନାହିଁ । ଆମେରିକା ଅଧୀନରେ ଦକ୍ଷିଣକୋରିଅରେ ସ୍ୱେଚ୍ଛାଚାରିତା ଚାଲିଛି । ଏହା ଲଟିମୋର୍‌ଙ୍କ ଲେଖାଦ୍ୱାରା ସମର୍ଥିତ ହେଉଛି ।

---

# ଉଦ୍‌ଯୋଗ ପର୍ବ

ଜାପାନର ପରାଜୟ ପରେ କୋରିଅ ସ୍ୱାଧୀନ ହେବ, ଏହି ଚୁକ୍ତି ଅଗରୁ ଆମେରିକା, ରୁଷିଅ, ଇଂଲଣ୍ଡ ଓ ଚୀନ କରିଥିଲେ । ୧୯୪୫ ଡିସେମ୍ବର ମାସରେ ସୋଭିଏଟ୍ ରାଜଧାନୀ ମସ୍କୋଠାରେ ଆମେରିକା, ଇଂଲଣ୍ଡ ଓ ସୋଭିଏଟ୍ ବୈଦେଶିକ ମନ୍ତ୍ରୀମାନଙ୍କର ଏକ ସମ୍ମିଳନୀ ବସିଲା । ଏହି ସମ୍ମିଳନୀରେ କୋରିଅ ସମ୍ପର୍କରେ ଆଲୋଚନା ଚାଲିଲା । ଆଲୋଚନାବେଳେ ଆମେରିକାର ପ୍ରକୃତ ସାମ୍ରାଜ୍ୟବାଦୀ ମନୋଭାବର ଆଭାସ ମିଳିଲା । ଆମେରିକା ପ୍ରସ୍ତାବ କଲା, ପ୍ରଥମ ପାଞ୍ଚବର୍ଷ ପାଇଁ କୋରିଅରେ ତତ୍ତ୍ୱାବଧାରକ ଶାସନ ଚାଲିବ, ଏବଂ ଏଥିପାଇଁ ଆମେରିକା, ଇଂଲଣ୍ଡ, ଚୀନ ଓ ସୋଭିଏଟ୍ ପ୍ରତିନିଧିଙ୍କୁ ନେଇ ଏକ ତତ୍ତ୍ୱାବଧାରକ କମିଟି ଗଢ଼ାଯିବ । ଏହି

କମିଟି ଜଣେ ହାଇକମିଶନରଙ୍କୁ ମନୋନୀତ କରିବେ ଏବଂ ସେ କୋରିଅ ଶାସନର ପ୍ରଧାନ ପରିଚାଳକ ହେବେ । ଦରକାର ହେଲେ ଏହି ପାଞ୍ଚବର୍ଷର ତତ୍ତ୍ୱାବଧାନ ସମୟ ଦଶବର୍ଷକୁ ବଢାଇଦିଆଯିବ । ଏହି ସମୟଟକ ପାଇଁ କୋରିଅବାସୀଙ୍କର କୌଣସି ଶାସନକ୍ଷମତା ରହିବ ନାହିଁ । ଏହି ପ୍ରସ୍ତାବ ଗୃହୀତ ହୋଇଥିଲେ ପୂରାପୂରି ସମଗ୍ର କୋରିଅ ଆମେରିକାର ଅଧୀନସ୍ଥ ହୋଇଯାଆନ୍ତା, ଏବଂ ଦକ୍ଷିଣକୋରିଅରେ ଯେଉଁ ବର୍ବରଶାସନ ଚାଲିଥିଲା, ତାହା ସମଗ୍ର କୋରିଅକୁ ବ୍ୟାପିଥାଆନ୍ତା । କାରଣ ଏହି ତତ୍ତ୍ୱାବଧାରକ କମିଟିରେ ଚ୍ୟାଙ୍ଗ୍‌କାଇଶେକ୍-ପ୍ରତିନିଧି ଏବଂ ଇଂଲଣ୍ଡର ପ୍ରତିନିଧି ଆମେରିକା ମନୋନୀତ ହାଇକମିଶନର୍ ନିଯୁକ୍ତିକୁ ସମର୍ଥନ କରନ୍ତେ ଏବଂ ଆମେରିକା ଶାସନର ଦୁର୍ନୀତିର ବିରୋଧ କରନ୍ତେ ନାହିଁ ।

ସୋଭିଏଟ୍ ପ୍ରତିନିଧି ଏହି ପ୍ରସ୍ତାବର ବିରୋଧ କରି ଅନ୍ୟ ଏକ ପ୍ରସ୍ତାବ ଆଗତ କଲେ । ଶେଷରେ ଏହି ସୋଭିଏଟ୍ ପ୍ରସ୍ତାବର ଭିତ୍ତି ଉପରେ ଏହି ତିନିରାଜ୍ୟର ବୈଦେଶିକ ମନ୍ତ୍ରୀଙ୍କ କୋରିଅ ସମ୍ପର୍କରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ଅନୁସାରେ କେବଳ ପାଞ୍ଚବର୍ଷ ପାଇଁ ତତ୍ତ୍ୱାବଧାରକ-ଶାସନ ରହିବ, ଏବଂ ଏହି ତତ୍ତ୍ୱାବଧାନ ହାଇକମିଶନର୍-ଶାସନ ଜରିଆରେ ନହୋଇ, କୋରିଅର ବିଭିନ୍ନ ଗଣତାନ୍ତ୍ରିକ ଦଳର ପ୍ରତିନିଧିଙ୍କୁ ନେଇ ଗଠିତ ଏକ 'ଅସ୍ଥାୟୀ ଗଣତାନ୍ତ୍ରିକ ସରକାର' ଦ୍ୱାରା ଚାଲିତ ହେବ । ଏହା ଫଳରେ ଏହି ତତ୍ତ୍ୱାବଧାନ ସମୟରେ ମଧ୍ୟ କୋରିଅବାସୀ ସ୍ୱାଧୀନ ଗଣତାନ୍ତ୍ରିକ ଶାସନର ସୁବିଧା ଉପଭୋଗ କରିବେ, ଗଣତାନ୍ତ୍ରିକ ଅନୁଭୂତି ଉପାର୍ଜ୍ଜନ କରିବେ । ତତ୍ତ୍ୱାବଧାନର ସମୟ ୫ ବର୍ଷରୁ ଅଧିକ ବଢିବ ନାହିଁ । ଏହି 'ଅସ୍ଥାୟୀ ଗଣତାନ୍ତ୍ରିକ ସରକାର' ଗଢିବାପାଇଁ ରୁଷ ଓ ଆମେରିକାର ଏକ ମିଳିତ କମିଶନ ନିଯୁକ୍ତ

ହେବ । ଏହି କମିଶନ୍ କୋରିଆର ବିଭିନ୍ନ ଗଣତାନ୍ତ୍ରିକ ଦଳର ପରାମର୍ଶ ଗ୍ରହଣ କରି 'ଅସ୍ଥାୟୀ ଗଣତାନ୍ତ୍ରିକ ସରକାର' ଗଢ଼ିବେ ।

ଦେଖାଗଲା, ଆରମ୍ଭରୁ ଆମେରିକା ଏହି ଚୁକ୍ତିକୁ ଭାଙ୍ଗିବାକୁ ପ୍ରସ୍ତୁତ । ଦକ୍ଷିଣ କୋରିଆରେ ଆମେରିକାର ଇଙ୍ଗିତରେ ଗୁଳାଇ କେତେକ ପ୍ରତିକ୍ରିୟାଶୀଳ ଦଳ ଏହି ଚୁକ୍ତି ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କଲେ ଏବଂ ସୋଭିଏଟ୍ ସରକାରର ଉଦ୍ଦେଶ୍ୟ ସମ୍ପର୍କରେ ନାନା କୁତ୍ସା ପ୍ରଚାର କରିବାକୁ ଲାଗିଲେ । 'ସୋଭିଏଟ୍-ଆମେରିକା ମିଳିତ କମିଶନ'ର କାର୍ଯ୍ୟ ମଧ୍ୟ ସୁରୁଖୁରୁରେ ଗୁଲିଲା ନାହିଁ । କେଉଁ ଦଳମାନଙ୍କ ସହିତ ଆଲୋଚନା ହେବ, ସେ ସମ୍ପର୍କରେ ମତଭେଦ ଆରମ୍ଭରୁ ପ୍ରକାଶ ପାଇଲା । ଯେଉଁସବୁ ପ୍ରତିକ୍ରିୟାଶୀଳ ଦଳ ମସ୍କୋ-ଚୁକ୍ତିର ଘୋର ବିରୋଧିତା କରନ୍ତି, ସେମାନଙ୍କୁ ଆମେରିକା କର୍ତ୍ତୃପକ୍ଷ ମୁଖ୍ୟ ପରାମର୍ଶଦାତାରୂପେ ଗ୍ରହଣ କରିବାକୁ ବସିଲେ କିନ୍ତୁ ସୋଭିଏଟ୍ ପ୍ରତିନିଧି ଏହାର ବିରୋଧକରି କେବଳ ଜନ-ସାଧାରଣଙ୍କର ପ୍ରକୃତ ସମର୍ଥନ ଉପରେ ଯେଉଁ ଦଳମାନେ ନିର୍ଭର କରନ୍ତି ସେମାନଙ୍କର ସହଯୋଗ ଗୁହିଁଲେ । ହାତଗଢ଼ା ଦଳମାନଙ୍କୁ ଜନପ୍ରତିନିଧି ଭାବରେ ଉପସ୍ଥାପିତ ନକରି ପରାମର୍ଶଯୋଗ୍ୟ ଦଳମାନଙ୍କର ସଭ୍ୟସଂଖ୍ୟା ଅତି ନ୍ୟୂନରେ କେତେ ହେବା ଉଚିତ, ତାହା ଠିକ୍ କରିବାପାଇଁ ସୋଭିଏଟ୍ ପକ୍ଷରୁ ଦାବୀ ହେଲା । ଶେଷରେ ମିଳିତ କମିଶନ୍‌ର କାର୍ଯ୍ୟ ଅଚଳ ହୋଇ ପଡ଼ିବାରୁ ଆମେରିକା ଓ ରୁଷର ବୈଦେଶିକ ମନ୍ତ୍ରୀମାନେ ପରସ୍ପର ବିମର୍ଶରେ ପୁଣି ଏକ ନିଷ୍ପତ୍ତିରେ ପହଞ୍ଚିଲେ । ନିଷ୍ପତ୍ତି ହେଲା, ଯେଉଁସବୁ ଗଣତାନ୍ତ୍ରିକ ଦଳର ସଭ୍ୟସଂଖ୍ୟା ଅନ୍ୟୂନରେ ଏକହଜାର ହୋଇଥିବ, ସେମାନଙ୍କର ପରାମର୍ଶ ଗ୍ରହଣ କରାଯିବ ଏବଂ ଅତୀତରେ ମସ୍କୋ-ଚୁକ୍ତିର ବିରୋଧ କରୁଥିଲେ ମଧ୍ୟ ବର୍ତ୍ତମାନ ଯଦି ସେମାନେ

ଏହି ଚୁକ୍ତିକୁ କାର୍ଯ୍ୟକାରୀ କରିବାପାଇଁ ଲିଖିତ ସ୍ୱୀକୃତ ଦିଅନ୍ତି ତାହାହେଲେ ସେମାନଙ୍କର ମଧ୍ୟ ପରାମର୍ଶ ନିଆଯିବ ।

ଏହି ନିଷ୍ପତ୍ତି ଅନୁସାରେ ପୁଣି ମିଳିତ କମିଶନ୍ କାର୍ଯ୍ୟ ଆରମ୍ଭ କଲା । ବିଭିନ୍ନ ଗଣତାନ୍ତ୍ରିକ ଦଳମାନଙ୍କ ପାଖକୁ ଏକ ପ୍ରଶ୍ନମାଳା ପଠାଗଲା । ଅସ୍ଥାୟୀ ଗଣତାନ୍ତ୍ରିକ ସରକାର କେଉଁ ନୀତି ଉପରେ ଏବଂ କେଉଁ ଆକାରରେ ଗଢ଼ାଯିବ, ସ୍ଥାନୀୟ ଶାସନର ନୀତି ଓ ଗଠନରୂପ କ'ଣ ହେବ, ଏବଂ 'ଅସ୍ଥାୟୀ ଗଣତାନ୍ତ୍ରିକ ସରକାରର କର୍ମଯୋଜନା ଓ ଲକ୍ଷ୍ୟ କ'ଣ ହେବା ଉଚିତ, ଏହି ସମ୍ପର୍କରେ ପ୍ରଶ୍ନମାନ ଏହି ଦଳମାନଙ୍କୁ ପଠାଯାଇଥିଲା । ଲିଖିତ ଉତ୍ତର ଗ୍ରହଣ ଏବଂ ଦଳମାନଙ୍କ ସହିତ ମୌଖିକ ଆଲୋଚନା ପାଇଁ ବ୍ୟବସ୍ଥା ହୋଇଥିଲା । କୋରିଆବାସୀ ଅତି ଆଗ୍ରହ ଓ ଉତ୍ସାହରେ ମିଳିତ କମିଶନ୍‌ର କାର୍ଯ୍ୟ ଲକ୍ଷ୍ୟ କରୁଥିଲେ । ଠିକ୍ ଏହି ସମୟରେ ଆମେରିକା ପକ୍ଷରୁ କମିଶନ୍‌ର କାର୍ଯ୍ୟରେ ବାଧା ସୃଷ୍ଟି କରାଗଲା । କମିଶନ୍‌ର କାର୍ଯ୍ୟରେ ସହଯୋଗ କରୁଥିବା ଗଣତାନ୍ତ୍ରିକ ଦଳମାନଙ୍କ ଉପରେ, ବିଶେଷରେ ବାମପନ୍ଥୀ ଦଳମାନଙ୍କ ଉପରେ ଆମେରିକା କର୍ତ୍ତୃପକ୍ଷ ଆକ୍ରମଣ ଆରମ୍ଭ କରିଦେଲେ । ମୁଖ୍ୟ ବାମପନ୍ଥୀ ଦଳମାନଙ୍କୁ ବେଆଇନ୍ କରାଗଲା, ସେମାନଙ୍କର କାଗଜମାନଙ୍କୁ ବଳପୂର୍ବକ ବନ୍ଦ କରିଦିଆଗଲା ଏବଂ ନେତାମାନେ ଗିରଫ ହେଲେ ।

ସୋଭିଏଟ୍ ପ୍ରତିନିଧି ସ୍କିକୋଭ୍ ୧୯୪୭ ଅଗଷ୍ଟ ୨୦ରେ ଏକ ସାଧାରଣ ବିବୃତିରେ ଏହି ଦମନର ପ୍ରତିବାଦ କରି ମିଳିତ କମିଶନ୍‌ର କାର୍ଯ୍ୟ ସୁରୁଖୁରୁରେ ଚଳାଇବା ନିମନ୍ତେ ନାଗରିକ ସ୍ୱାଧୀନତା ଅକ୍ଷୁର୍ଣ୍ଣ ରଖିବାକୁ ଦାବୀ କରିଥିଲେ । ସୋଭିଏଟ୍ ପ୍ରତିନିଧି ଦମନର ବହୁ ଉଦାହରଣ ନିଜ ବିବୃତିରେ ପ୍ରକାଶ କରିଛନ୍ତି । ସେଓଲଠାରେ ୧୯୪୭ ଜୁଲାଇ ୨୭ ତାରିଖଦିନ ମିଳିତ

କମିଶନଙ୍କୁ ଅଭିନନ୍ଦନ କରିବା ସକାଶେ 'ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ'ର ଏକ ସଭା ଆହୂତ ହୋଇଥିଲା । ଏହି ସଭାରେ ମିଳିତ କମିଶନ୍‌ର ଉପସ୍ଥିତିରେ ଅଭିନନ୍ଦନ ବକ୍ତୃତା ଦେବା ପରେ ପରେ ଶ୍ରମିକସଂଘର ଜଣେ ପ୍ରତିନିଧି ଓ 'ମହିଳା ସହଯୋଗ ସମିତି'ର ଜଣେ ପ୍ରତିନିଧିଙ୍କୁ ଗିରଫ କରାଗଲା । ଏହି ଅଭିନନ୍ଦନ ସଭାର ଉଦ୍ୟୋକ୍ତାଙ୍କୁ ମଧ୍ୟ ଗିରଫ କରାଗଲା । ଶ୍ରମିକଦଳର ସହକାରୀ ନେତା ମଧ୍ୟ ଗିରଫ ହେଲେ । ପୁଣି ଅଗଷ୍ଟ ୧୨ରେ 'ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ'ର ବହୁ ସଭ୍ୟଙ୍କୁ ବନ୍ଦୀ କରାଗଲା । ସେହି ମାସରେ କୃଷକ ସଂଘର ବହୁନେତା ଓ କର୍ମୀ ମଧ୍ୟ ଗିରଫ ହେଲେ । ଏହାପରେ 'ମହିଳା ସହଯୋଗ ସମିତି', 'ଯୁବସଂଘ', 'ଲେଖକସଂଘ', 'ଓକିଲ ସଂଘ' ଏବଂ ପ୍ରଗତିଶୀଳ କାଗଜମାନଙ୍କର କର୍ମୀମାନଙ୍କୁ ମଧ୍ୟ ଗିରଫ କରି ନିଆଗଲା । ସରକାରୀ ଆଦେଶ ବଳରେ 'ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ' ଏବଂ 'ଜନତାର ଗଣତାନ୍ତ୍ରିକ ଦଳ'ର ଅଫିସମାନଙ୍କୁ ବନ୍ଦ କରିଦିଆଗଲା । ଅଗଷ୍ଟ ୧୪ରେ ସୋଭିଏଟ୍ ପ୍ରତିନିଧିଙ୍କର ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇଥିବା ଅପରାଧରେ ପ୍ରଧାନ ପ୍ରଧାନ ଗଣତାନ୍ତ୍ରିକ କାଗଜର ଦଶ ପ୍ରତିନିଧି ଗିରଫ ହୋଇଥିଲେ । ଦମନର ଏହି ବାତାବରଣରେ ଗଣତାନ୍ତ୍ରିକ ଦଳମାନଙ୍କର ପ୍ରତିନିଧିଙ୍କ ସହିତ ପରାମର୍ଶ ଅସମ୍ଭବ ହୋଇ ସୋଭିଏଟ୍ ପ୍ରତିନିଧି ପ୍ରତିବାଦ କରି ରାଜନୈତିକ ବନ୍ଦୀଙ୍କ ମୁକ୍ତି ଏବଂ ସ୍ୱାଧୀନମତ ପ୍ରକାଶର ଅଧିକାର ଦାବୀ କରିଥିଲେ ।

ଏହାପରେ ମିଳିତ କମିଶନ୍‌ର କାର୍ଯ୍ୟ ଅଚଳ ହୋଇପଡିଲା । କମିଶନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ସୋଭିଏଟ୍ ସରକାରର ସମସ୍ତ ଉଦ୍ୟମ ବିଫଳ ହେଲା । କାଳକ୍ଷେପଣ ବନ୍ଦ କରିବା ସକାଶେ ସୋଭିଏଟ୍ ପ୍ରତିନିଧି ପ୍ରସ୍ତାବ କଲେ, ଯେଉଁସବୁ ଦଳ ଓ ସଂଗଠନ

ସହିତ ଆଲୋଚନା କରିବା ପାଇଁ କମିଶନ୍ ଏକମତ, ପ୍ରଥମେ ସେହିମାନଙ୍କ ସହିତ ଆଲୋଚନା ଆରମ୍ଭ ହେଉ । ଆମେରିକାନ୍ ପ୍ରତିନିଧି ଏହି ପ୍ରସ୍ତାବକୁ ଗ୍ରହଣ କଲେନାହିଁ । ତାପରେ ୧୯୪୭ ଅଗଷ୍ଟ ୫ରେ ସୋଭିଏଟ୍ ପ୍ରତିନିଧି ପ୍ରସ୍ତାବ କଲେ ଯେ କମିଶନ୍ 'ଅସ୍ଥାୟୀ ଗଣତାନ୍ତ୍ରିକ ସରକାର'ର ଗଠନ ଓ କାର୍ଯ୍ୟ ସଂପର୍କରେ ଏକ ସୁପାରିଶ ରଠା ପ୍ରସ୍ତୁତ କରୁ । ଏହି ପ୍ରସ୍ତାବ ମଧ୍ୟ ଆମେରିକାର ଅଗ୍ରାହ୍ୟ ହେଲା । ଅଗଷ୍ଟ ୨୬ରେ ସୋଭିଏଟ୍ ପ୍ରତିନିଧି ପୁଣି ପ୍ରସ୍ତାବ କଲେ, ଯେହେତୁ ଗଣତାନ୍ତ୍ରିକ ଦଳମାନଙ୍କ ସହିତ ସରକାର ଗଠନ ସଂପର୍କରେ ଆଲୋଚନା ସମ୍ଭବ ହୋଇ ପାରୁନାହିଁ, ସମୟ ନଷ୍ଟ ନକରିବା ପାଇଁ କୋରିଆର ସମସ୍ତ ଗଣତାନ୍ତ୍ରିକ ଦଳ ଓ ଅନୁଷ୍ଠାନମାନଙ୍କୁ ନେଇ ଏକ ବ୍ୟବସ୍ଥାପକ ସଭା ଗଢାଯାଉ ଏବଂ ଏହା ପରାମର୍ଶଦାତାର କାର୍ଯ୍ୟ କରୁ । ଏହା ଫଳରେ କୋରିଆବାସୀ ଶାସନକାର୍ଯ୍ୟରେ ସହଯୋଗ କରିବାରେ ସୁବିଧା ପାଇବେ । କିନ୍ତୁ ଏହି ପ୍ରସ୍ତାବ ମଧ୍ୟ ଆମେରିକା ଗ୍ରହଣ କରିପାରିଲା ନାହିଁ । ତାପରେ ସେପ୍ଟେମ୍ବର ୧୭ ତାରିଖରେ ସୋଭିଏଟ୍ ପ୍ରତିନିଧି ପ୍ରସ୍ତାବ କଲେ, ଯେଉଁସବୁ ବିଷୟରେ ମିଳିତ କମିଶନ୍ ଏକମତ, ସେସବୁ ପ୍ରସ୍ତାବ ଅବିଳମ୍ବେ କାର୍ଯ୍ୟକାରୀ କରାଯାଉ । ସୋଭିଏଟ୍ ପ୍ରତିନିଧି ଦର୍ଶାଇ ଥିଲେ ଯେ ମସ୍କୋଚୁକ୍ତିର ପ୍ରଧାନ ଲକ୍ଷ୍ୟ ଥିଲା, ଅବିଳମ୍ବେ ଅସ୍ଥାୟୀ ଗଣତାନ୍ତ୍ରିକ ସରକାର ଗଢିବା । ଯେଉଁସବୁ ମିଳିତ ନିଷ୍ପତ୍ତି ଏହି ସରକାର ଗଠନରେ ସାହାଯ୍ୟ କରିବ, ସେସବୁ କାର୍ଯ୍ୟକାରୀ ନକରି କାଳକ୍ଷେପଣ କରିବା ଚୁକ୍ତିଭଙ୍ଗ ଛଡା ଅନ୍ୟ କିଛି ନୁହେଁ । ଏହାର କୌଣସି ଉତ୍ତର ଆମେରିକା ପକ୍ଷରୁ ମିଳି ନଥିଲା । ଏଣେ ଆମେରିକା ସରକାର ବାହାରେ ପ୍ରଚାର କରିବାକୁ ଲାଗିଲେ, ସୋଭିଏଟ୍ ସରକାର ମସ୍କୋନିଷ୍ପତ୍ତିକୁ କାର୍ଯ୍ୟକାରୀ କରୁନାହାନ୍ତି ।

ମିଳିତ କମିଶନ୍‌ର କାର୍ଯ୍ୟ ଭଣ୍ଡୁର କରି କାଳକ୍ଷେପଣମାତ୍ର ଧରିବା ଏବଂ ସୋଭିଏଟ୍ ସରକାର ସମ୍ପର୍କରେ ମିଥ୍ୟା ପ୍ରଚାର କରିବା ମୂଳରେ ଆମେରିକା ସରକାରର ଏକ ଦୁରଭିସନ୍ଧି ଲୁଚି ରହିଥିଲା । ଆମେରିକା ସରକାର ସାଧାରଣରେ ସାବ୍ୟସ୍ତ କରିବାକୁ ଚାହୁଁଥିଲା ଯେ ସୋଭିଏଟ୍ ରୁଷ ସହିତ ମିଳିତ ଆଲୋଚନା କିମ୍ବା ମିଳିତ କାର୍ଯ୍ୟ-ସମ୍ଭବ ନୁହେଁ । ତେଣୁ 'ମିଳିତ ଜାତିସଂଘ' କୋରିଆ ପ୍ରଶ୍ନରେ ହସ୍ତକ୍ଷେପ କରିବା ନିହାତି ଦରକାର । ଏହି ଦାବୀ ଅଗତ କରିବା ପାଇଁ ଆମେରିକା ସରକାର ଆଗରୁ ବାଟ ପରିଷ୍କାର କରି ରଖିଥିଲା । 'ମିଳିତ ଜାତିସଂଘ'ର ଅଧିକାଂଶ ସଭ୍ୟ ଆମେରିକାର କୃପାପ୍ରାର୍ଥୀ ଏବଂ ଆମେରିକାର ଇଙ୍ଗିତରେ ଚଳିବାକୁ ବାଧ୍ୟ । ଏହା ଜଣାଶୁଣା କଥା, ଦକ୍ଷିଣ ଆମେରିକାର ସମସ୍ତ ଦେଶ ନାମତଃ ସ୍ୱାଧୀନ ହେଲେ ମଧ୍ୟ କାର୍ଯ୍ୟତଃ ଯୁକ୍ତରାଷ୍ଟ୍ର ଆମେରିକା ଦ୍ୱାରା ଚାଳିତ । ତାପରେ, ଏପରି ଅନେକ ଛୋଟ ଦେଶ ଅଛନ୍ତି, ଯେଉଁମାନଙ୍କ ସରକାରକୁ ଆମେରିକାର କଣାକଙ୍କର କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ଆମେରିକା ଅତି ସହଜରେ କଳାକୁ ଧଳା କରି, ଅନ୍ୟାୟକୁ ନ୍ୟାଯ୍ୟ କରି ଯେକୌଣସି ପ୍ରସ୍ତାବ 'ମିଳିତ ଜାତିସଂଘ'ରେ ବହୁମତରେ ଗୃହୀତ କରାଇପାରେ ।

ଆମେରିକାର ଏହି ଦୁରଭିସନ୍ଧି ବୁଝିପାରି ସୋଭିଏଟ୍ ପ୍ରତିନିଧି ମିଳିତ କମିଶନ୍‌ରେ ପ୍ରସ୍ତାବ କଲେ, ୧୯୪୮ ଆରମ୍ଭରେ ଉଭୟ ସୋଭିଏଟ୍ ଓ ଆମେରିକା ସୈନ୍ୟ କୋରିଆ ଛାଡ଼ି ଚାଲିଆସନ୍ତୁ, ଏବଂ କୋରିଆଲୋକେ ନିଜ ଭାଗ୍ୟ ନିଜ ହାତରେ ଗଢ଼ିବାର ପୂର୍ଣ୍ଣ ସ୍ୱାଧୀନତା ପାଆନ୍ତୁ । ସୋଭିଏଟ୍‌ର ଯୁକ୍ତି ହେଲା, ବୈଦେଶିକ ସୈନ୍ୟ କୋରିଆ ଦଖଲ କରି ରହିଥିବା ଯାଏ କୋରିଆବାସୀ ପ୍ରକୃତ ସ୍ୱାଧୀନ ହୋଇ ପାରିବେନାହିଁ । ଯେତେବେଳେ କୋରିଆର

ଗଣତାନ୍ତ୍ରିକ ବିକାଶ ସମ୍ପର୍କରେ ଅଧିକାର କରି ରହିଥିବା ଶକ୍ତିମାନଙ୍କର ମତଭେଦ ମୀମାଂସାରେ ପହଞ୍ଚିପାରୁ ନାହିଁ, ବୈଦେଶିକ ଦଖଲକାରୀ ସୈନ୍ୟମାନେ କୋରିଆରେ ରହିଥିବା ଯାଏ କୋରିଆବାସୀ ସ୍ୱାଧୀନ ମତପ୍ରକାଶ କରିବା ସମ୍ଭବ ନୁହେଁ। ତେଣୁ ଉଭୟ ଦେଶର ସେନାଙ୍କୁ କୋରିଆ ଛାଡ଼ି ଯିବାକୁ ପଡ଼ିବ।

ସୋଭିଏଟ୍‌ର ଏହି ପ୍ରସ୍ତାବ ସମଗ୍ର କୋରିଆରେ ବିଜୁଳି ଚମକ ଖେଳାଇଦେଲା। କୋରିଆବାସୀ ସୋଭିଏଟ୍ ପ୍ରସ୍ତାବକୁ ଆନନ୍ଦ ଓ ଉତ୍ସାହର ସହିତ ଅଭିନନ୍ଦନ କଲେ। କେବଳ ବାମପନ୍ଥୀ ଦଳ ଓ ସଂଗଠନମାନେ ଯେ ଏହି ପ୍ରସ୍ତାବକୁ ସ୍ୱାଗତ କଲେ, ତାହା ନୁହେଁ, ଦକ୍ଷିଣପନ୍ଥୀ ଦଳମାନେ ମଧ୍ୟ ସୋଭିଏଟ୍ ପ୍ରସ୍ତାବକୁ ସମର୍ଥନ କଲେ। କୋରିଆର ସବୁଶ୍ରେଣୀର ଲୋକେ ବୈଦେଶିକ ସେନାର ଅପସାରଣ ପାଇଁ ବ୍ୟାକୁଳ, ଏହା ଆମେରିକା ଶାସକଶ୍ରେଣୀର 'ନିଉୟର୍କ-ଟାଇମସ୍' ପ୍ରଭୃତି କାଗଜ ସେତେବେଳେ ସ୍ୱୀକାର କରିଛନ୍ତି।

ଆମେରିକା କୋରିଆ ଛାଡ଼ି ଯିବାକୁ ଆଦୌ ପ୍ରସ୍ତୁତ ନଥିଲା। ଆମେରିକା ସରକାରଙ୍କ ଜଣେ ପ୍ରଧାନ ମୁଖପାତ୍ର ମେଜର୍ ଜେନେରାଲ ହିଲ୍‌ଡ୍ରିଙ୍ଗ୍ ଘୋଷଣା କଲେ, "ଆମେ ଆସନ ଜମାଇ ବସିଛୁ। ଆମର କାର୍ଯ୍ୟ ସମ୍ପୂର୍ଣ୍ଣ ନ ହେବାଯାଏ ଆମେ ରହିବୁ।" କିନ୍ତୁ ବିଦେଶୀ ସୈନ୍ୟ କୋରିଆ ଛାଡ଼ି ଚାଲିଯିବାପାଇଁ ଯେଉଁ ପ୍ରବଳ ଦାବୀ ଉଠିଲା, ତାହାକୁ ଏଡ଼ାଇଦେବା ପାଇଁ ଆମେରିକା ଅନ୍ୟ ପନ୍ଥା ଗ୍ରହଣ କଲା। ମିଳିତଜାତିସଂଘର ସାଧାରଣ ଏସେମ୍ବ୍ଲିର ଦ୍ୱିତୀୟ ଅଧିବେଶନରେ ଆମେରିକା କୋରିଆ ସମସ୍ୟା ଆଲୋଚନା ପାଇଁ ପ୍ରସ୍ତାବ ଆଗତ କଲା। ଏହିପରି ଆଲୋଚନା ଜାତିସଂଘର ବିଧାନ-ବିରୋଧୀ। ଷମତାବିଜୟୀଙ୍କର ପୀଠ ଭାବରେ ମିଳିତଜାତିସଂଘ ଯେପରି ବ୍ୟବହୃତ ନହୁଏ, ସେଥିପାଇଁ ତାହାର ବିଧାନରେ ବିଭିନ୍ନ

ରକ୍ଷାକବଚ ନହୁନ୍ତି । କୌଣସି ଦେଶ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନେବାକୁ ହେଲେ, ତାହା କେବଳ ନିରାପତ୍ତା ପରିଷଦ ଠିକ୍ କରିପାରିବ ଏବଂ ସେଥିପାଇଁ ସମସ୍ତ ସ୍ଥାୟୀ ସଭ୍ୟଙ୍କର (ଆମେରିକା, ରୁଷ, ଇଂଲଣ୍ଡ, ଚୀନ ଓ ଫ୍ରାନସ୍) ସମ୍ମତି ଦରକାର । ସାଧାରଣ ଏସେମ୍ବ୍ଲି କେବଳ ନିରାପତ୍ତା ପରିଷଦର ବିଚାର ପାଇଁ ସୁପାରିଶ୍ କରିପାରେ । ଶାନ୍ତିଭଙ୍ଗ ଏବଂ ନିରାପତ୍ତା ପ୍ରଶ୍ନ ସମ୍ପର୍କରେ କେବଳ ଏହି ପ୍ରକାର ନିଷ୍ପତ୍ତି ନିଆଯିବ । ଗତ ଯୁଦ୍ଧରେ ଭାଗ ନେଇଥିବା ଦେଶମାନଙ୍କ ମଧ୍ୟରେ ଯେଉଁ ଯୁଦ୍ଧୋତ୍ତର ଚୁକ୍ତି ଓ ନିଷ୍ପତ୍ତିସବୁ ହୋଇଛି, ତାହା ମିଳିତଜାତିସଂଘର ଆଲୋଚନାର ବସ୍ତୁ ହେବ ନାହିଁ । କେବଳ ଶାନ୍ତିଭଙ୍ଗ ହୋଇଥିଲେ ସେସବୁ ଆଲୋଚିତ ହେବ । ଏହି କଟକଣା ପଛରେ ରହିଛି, କ୍ଷମତାଗୃଧ୍ନୀମାନଙ୍କର ମିଳିତଜାତିସଂଘକୁ ରକ୍ଷା କରିବାର ସଂକଳ୍ପ । କୋରିଆପ୍ରଶ୍ନ ଏକ ଯୁଦ୍ଧୋତ୍ତର ସମସ୍ୟା ଏବଂ ଏହି ସଂପର୍କରେ ଏକ ମିଳିତଚୁକ୍ତି-ମସ୍କୋନିର୍ଦ୍ଧାରଣ ରହିଛି । ଏପରି ସ୍ଥଳେ ଏହି ଚୁକ୍ତିକୁ କାର୍ଯ୍ୟକାରୀ କରିବା ଉଦ୍ୟମ ନକରି, ମିଳିତ-ଜାତିସଂଘର ନିଷ୍ପତ୍ତି ଉପରେ କୋରିଆ ସମସ୍ୟାକୁ ଛାଡ଼ି ଦେବା ବିଧାନ-ବିରୁଦ୍ଧ ଏବଂ କ୍ଷମତା ଗୃଧ୍ନୀମାନଙ୍କର ପରିଚୟ ।

ସୋଭିଏଟ୍ ପ୍ରତିନିଧି ଦର୍ଶାଇଥିଲେ, ଏହି ଆଲୋଚନା ଏକାବେଳେକେ ଅବୈଧାନିକ ଏବଂ ଏହା ଦ୍ୱାରା ପ୍ରକୃତରେ କୋରିଆ-ବାସୀଙ୍କର ସ୍ୱାର୍ଥସାଧନ ହେବନାହିଁ । ସୋଭିଏଟ୍ର ଆପତ୍ତି ସତ୍ତ୍ୱେ ଯେତେବେଳେ ଆମେରିକା ପରିଚାଳିତ ଗ୍ରେଟପଲ୍ଟ କୋରିଆ ସମସ୍ୟା ଆଲୋଚନା କରିବାକୁ ନିଷ୍ପତ୍ତି ନେଲା, ସୋଭିଏଟ୍ ପ୍ରତିନିଧି ପ୍ରସ୍ତାବ ଆଗତ କଲେ ଯେ, କୋରିଆବାସୀଙ୍କୁ ନିଜର ଭବିଷ୍ୟତ ନିର୍ଣ୍ଣୟ କରିବାପାଇଁ ପୂର୍ଣ୍ଣ ସ୍ୱାଧୀନତା ଦେବା ଲାଗି ୧୯୪୮ ଆରମ୍ଭରେ

ସମସ୍ତ ବୈଦେଶିକ ସୈନ୍ୟ କୋରିଅରୁ ଅପସରି ଯାଆନ୍ତୁ । ଏହି ସମ୍ପର୍କରେ କୋରିଅ ପ୍ରତିନିଧିଙ୍କର ମତାମତ ଶୁଣିବାପାଇଁ ସୋଭିଏଟ୍ ପ୍ରତିନିଧି ଦାବୀକଲେ । କିନ୍ତୁ ଏହି ପ୍ରସ୍ତାବ ଗୃହୀତ ହୋଇଥିଲେ ଆମେରିକାର ଲକ୍ଷ୍ୟ ସାଧିତ ହୁଅନ୍ତା ନାହିଁ । ତେଣୁ ଆମେରିକା ଦ୍ୱାରା ପ୍ରଭାବିତ ଅଧିକାଂଶ ପ୍ରତିନିଧିଙ୍କ ଭୋଟରେ ସୋଭିଏଟ୍ ପ୍ରସ୍ତାବ ନାକଚ ହେଲା ଏବଂ ଆମେରିକାର ପ୍ରସ୍ତାବ ଗୃହୀତ ହେଲା ।

ଆମେରିକାର ପ୍ରସ୍ତାବ ଅନୁସାରେ ମିଳିତ ଜାତିସଂଘ ତରଫରୁ ଏକ କମିଶନ୍ ନିଯୁକ୍ତ ହେଲା ଏବଂ ଏହି କମିଶନ୍‌କୁ ନିର୍ବାଚନ ତଦାରଖ କରିବା, ଜାତୀୟ ବାହିନୀ ଗଠନ କରିବା ପ୍ରଭୃତି ଗୁରୁ ଦାୟିତ୍ୱ ଦିଆଗଲା । କୋରିଅବାସୀଙ୍କର ମତ ନ ନେଇ, ମିଳିତ ଜାତିସଂଘର ବିଧାନକୁ ଅବମାନନା କରି ଏହି ଯେଉଁ କମିଶନ ନିଯୁକ୍ତ କରାଗଲା, ତାହା କେବଳ ମସ୍କୋ ସମ୍ମିଳନୀରେ ଆମେରିକା ଦ୍ୱାରା ପ୍ରଥମେ ଆଗତ ହୋଇଥିବା ପ୍ରସ୍ତାବର ଅନ୍ୟ ଏକ ରୂପ । ସେହି ପ୍ରସ୍ତାବର 'ଗୃହଶକ୍ତିକମିଟି' ଓ 'ହାଇକମିଶନ୍‌ଶାସନ'ର ଏହା ଅନ୍ୟ ଏକ ସଂସ୍କରଣ । ଇଂଲଣ୍ଡ ଓ ଚୀନ ପ୍ରତିନିଧିଙ୍କର ସାହାଯ୍ୟରେ ସେତେବେଳେ ଆମେରିକା ହାଇକମିଶନର୍ ନିଯୁକ୍ତ ଏବଂ ସମଗ୍ର କୋରିଅର ଶାସନକୁ ନିଜ ଆୟତ୍ତକୁ ଆଣିବା କଳ୍ପନା କରିଥିଲା । ବର୍ତ୍ତମାନ ଆମେରିକା ଇଙ୍ଗିତରେ ମିଳିତ ଅଧିକାଂଶ ସଭ୍ୟଙ୍କୁ ନେଇ ଯେଉଁ କୋରିଅକମିଶନ୍ ଗଠିତ ହେଲା, ତାହାର ଅନ୍ତରାଳରେ ଆମେରିକା ସମଗ୍ର କୋରିଅକୁ ଅଧୀନସ୍ଥ କରିବାକୁ ଉଦ୍ୟମ କରୁଛି, ଏହା ଅଛପା ରହିଲା ନାହିଁ । ଏହି କମିଶନ୍ ଯେ ଆମେରିକା ଶାସକମାନଙ୍କର କାର୍ଯ୍ୟକୁ ସମର୍ଥନ କରିବ, ଏବଂ ଏହି କମିଶନ୍‌ର ଅନ୍ତରାଳରେ ଆମେରିକା ନିଜର ମନୋନୀତ ଏକ ସାକ୍ଷୀକୁଣ୍ଢେଇ ସରକାର ଗଢି କୋରିଅରେ ନିଜର ଶାସନ ଓ ଶୋଷଣକୁ ଦୃଢ଼

କରିକ, ଏହା କୋରିଅର ଜନସାଧାରଣ ଭଲଭାବରେ ବୁଝିପାରିଲେ । ତେଣୁ କୋରିଆରେ ପ୍ରବଳ ପ୍ରତିବାଦ ମୁଣ୍ଡ ଟେକି ଉଠିଲା । ସଭା ଶୋଭାଯାତ୍ରା, ସାଧାରଣ ଧର୍ମଘଟରେ ବିକ୍ଷୋଭ କୋରିଅର ଉଭୟ ଅଞ୍ଚଳରେ ପ୍ରକାଶ ପାଇଲା । ଏହି କମିଶନ୍‌କୁ ବର୍ଜନ କରିବା ପାଇଁ ଗଣତାନ୍ତ୍ରିକ କୋରିଅ ବଦ୍ଧପରିକର ହେଲା । ସୋଭିଏତ୍ ସରକାରର ପ୍ରତିବାଦ ସତ୍ତ୍ୱେ ଏହି ବିଧାନବିରୁଦ୍ଧ ପ୍ରସ୍ତାବ ଗୃହୀତ ହେବାରୁ, ଏବଂ ଏହାଦ୍ୱାରା ସୋଭିଏତ୍ ସରକାରର କୋରିଆ ଜନତା ପ୍ରତି ଦାୟିତ୍ୱ ଅବହେଳିତ ହେଉଥିବାରୁ ସୋଭିଏତ୍ ସରକାର ଏହି ନୀତିକୁ ବେଆଇନ୍ ଓ ନୀତିବିରୁଦ୍ଧ ବୋଲି ଅଗ୍ରାହ୍ୟ କଲା । ସୋଭିଏତ୍ ସରକାରର ଏହି ସିଦ୍ଧାନ୍ତକୁ କୋରିଅର ଅଧିକାଂଶ ଜନମତରେ ସ୍ୱାଗତ କରିଥିଲେ ।

ମିଳିତ ଜାତିସଂଘର 'କୋରିଆ କମିଶନ୍' ସେଓଲଠାରେ ପାଦ ଦେବା ମାତ୍ରେ ଶ୍ରମିକମାନେ ସାଧାରଣ ଧର୍ମଘଟ କରି ନିଜର ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ପ୍ରତିବାଦ ଆନ୍ଦୋଳନ ଦେଶର ସର୍ବତ୍ର ଦେଖାଯାଇଥିଲା । 'କୋରିଅ-କମିଶନ' ଦକ୍ଷିଣ କୋରିଅକୁ ଆସି ଅନୁସନ୍ଧାନ କରି ବୁଝିଲେ ଯେ ଦକ୍ଷିଣ କୋରିଅରେ ସ୍ୱାଧୀନ ନିର୍ବାଚନ ସମ୍ଭବ ନୁହେଁ । ତେଣୁ ସେମାନେ ରିପୋର୍ଟ ଲେଖିଲେ, "ଯେକୌଣସି କୋରିଅବାସୀ ନିଜର ସ୍ୱାଧୀନତା ପାଇଁ ପୋଲିସ୍‌ର କୃପା ଉପରେ ନିର୍ଭର କରନ୍ତି । ଯେକୌଣସି ସମୟରେ ବିନା ୱାରେଣ୍ଟରେ ସେ ଗିରଫ ହୋଇ ଅନିର୍ଦ୍ଦିଷ୍ଟକାଳ ପାଇଁ ଜେଲରେ ଅଟକ ରହିପାରନ୍ତି । ଆଇନଅଦାଲତରେ ତାଙ୍କର ଜେଲଦଣ୍ଡ ଆଲୋଚନା ହେବା ପାଇଁ କୌଣସି ଆଇନଗତ ବ୍ୟବସ୍ଥା ନାହିଁ ।" ଏକ ନିର୍ବାଚନବିରୋଧୀ ରିପୋର୍ଟ ଲେଖିଥିଲେ ମଧ୍ୟ କମିଶନ୍ ଆମେରିକା ସରକାରର ଦାବୀ ଅନୁସାରେ ଶେଷରେ ଦକ୍ଷିଣକୋରିଅରେ ନିର୍ବାଚନ କରାଇବା ପାଇଁ ସ୍ଥିର କଲେ ।

ଦକ୍ଷିଣକୋରିଆରେ ଅଲଗା ନିର୍ବାଚନ କରିବା ନିଷ୍ପତ୍ତି ବିରୁଦ୍ଧରେ ଦକ୍ଷିଣ ଉତ୍ତର ଉଭୟ କୋରିଆରେ ପ୍ରତିବାଦ ଆନ୍ଦୋଳନ ତୀବ୍ର ହୋଇ ଉଠିଲା । ୧୯୪୮ ଏପ୍ରିଲ ଶେଷ ଭାଗରେ ଉତ୍ତର କୋରିଆ ରାଜଧାନୀ ପିଙ୍ଗ୍‌ୟୁଙ୍ଗ୍‌ଠାରେ ଉଭୟ କୋରିଆର ୬୫ଟି ରାଜନୈତିକ ଦଳର ପ୍ରତିନିଧିଙ୍କ ଏକ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ଦକ୍ଷିଣକୋରିଆର କେତେକ ଦକ୍ଷିଣ ପନ୍ଥୀ ଦଳର ମୁଖ୍ୟ ନେତାମାନେ ମଧ୍ୟ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ପ୍ରଧାନ ହେଉଛନ୍ତି, ଦକ୍ଷିଣ ପନ୍ଥୀ 'ସ୍ୱାଧୀନ କୋରିଅନ୍ ଦଳ'ର ନେତା କିମ୍‌କୁ ଏବଂ ଦକ୍ଷିଣକୋରିଆ ବ୍ୟବସ୍ଥାପକର ସଭାପତି ପଦରୁ ପ୍ରତିବାଦ କରି ଇସ୍ତଫା ଦେଇଥିବା କିମ୍‌କୁଇସିକ୍ । ଯେଉଁ ସବୁ ଦଳ ଓ ଅନୁଷ୍ଠାନର ପ୍ରତିନିଧିମାନେ ସମ୍ମିଳନୀରେ ଯୋଗ ଦେଇଥିଲେ, ସେମାନଙ୍କର ମୋଟ ସଭ୍ୟ ସଂଖ୍ୟା ଏକ କୋଟିରୁ ଊର୍ଦ୍ଧ୍ୱ ହେବ । ମିଳିତଜାତିସଂଘର କମିଶନ୍‌କୁ କୋରିଆରୁ ଫେରାଇ ନେବାକୁ ଏହି ସମ୍ମିଳନୀ ଆମେରିକା ଓ ରୁଷ ନିକଟରେ ଦାବୀ କରିଥିଲା । କୋରିଆରୁ ସୋଭିଏଟ୍ ଓ ଆମେରିକା ସୈନ୍ୟ ଉଠାଇ ନେବାପାଇଁ ସୋଭିଏଟ୍ ଆଗତ ପ୍ରସ୍ତାବକୁ ସମ୍ମିଳନୀ ସମର୍ଥନ କରି ଆମେରିକା ସରକାର ଏହି ପ୍ରସ୍ତାବକୁ ଗ୍ରହଣ କରନ୍ତୁ ବୋଲି ଅନୁରୋଧ କରିଥିଲା । ସ୍ୱତନ୍ତ୍ର ନିର୍ବାଚନକୁ ବର୍ଜନ କରିବା ସକାଶେ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହୋଇଥିଲା ।

ଦକ୍ଷିଣକୋରିଆର ଜନସାଧାରଣ ସ୍ୱତନ୍ତ୍ର ନିର୍ବାଚନକୁ ବର୍ଜନ କରିବାପାଇଁ ଦୃଢ଼ସଂକଳ୍ପ ହେଲେ । ଜନତାର ବିକ୍ଷୋଭ କେତେକ କ୍ଷେତ୍ରରେ ଶସସ୍ତ୍ର ସଂଗ୍ରାମରେ ପରିଣତ ହୋଇଥିଲା । କୋରିଆ କମିଶନ୍‌ର ରିପୋର୍ଟ ଅନୁସାରେ, ଚେଜୁଦ୍ୱୀପରେ ସରକାର ସମର୍ଥିତ ଫାସିଷ୍ଟମାନଙ୍କର ଅତ୍ୟାଚାରର ପ୍ରତିବାଦରେ ବ୍ୟାପକ

ଗଣ୍ଡିଲପୂର୍ଣ୍ଣ ଦେଖାଦେଲା । ସରକାରର ତୀବ୍ର ଦମନ ସତ୍ତ୍ୱେ ଏହି ଦ୍ୱୀପରେ ନିର୍ବାଚନ ଅଦୌ ସମ୍ଭବ ହେଲା ନାହିଁ । ସାମରିକ ପୋଲିସ୍ ଏବଂ ଫାସିଷ୍ଟ ଯୁବକବାହିନୀର ତାଡ଼ନା ସତ୍ତ୍ୱେ ଅଧିକାଂଶ ଭୋଟଦାତା ନିର୍ବାଚନରେ ଯୋଗ ଦେଇନଥିଲେ । ଭୋଟରମାନଙ୍କୁ ଏପରି ଭାବରେ ହଇରାଣ କରାଗଲା ଯେ କୋରିଆ କମିଶନର ସମ୍ପାଦକ ଅମେରିକାନ୍ କର୍ତ୍ତୃପକ୍ଷଙ୍କ ନିକଟରେ ଆପତ୍ତି କରିବାକୁ ବାଧ୍ୟହେଲେ । ଭୋଟ ଦାନ ଛକାଘରରେ 'ମେସିନ୍‌ଗନ୍' ସଜା ହୋଇ ରହିଥିଲା ଏବଂ ଭୋଟଦେବା ସ୍ଥାନରେ ସଶସ୍ତ୍ର ପୋଲିସ୍ ପହରା ଦେଉଥିଲେ । ନିର୍ବାଚନରେ ଶତକଡ଼ା ୭୦ ଜଣ ଭୋଟର ମଧ୍ୟ ଯୋଗ ଦେଇନଥିଲେ । ଯେଉଁ ପରିସ୍ଥିତିରେ ଭୋଟ ନିଆଗଲା ତାହା ସାଧାରଣରେ ପ୍ରକାଶ ପାଇବାରୁ ଆମେରିକାର 'ନେସନ୍' କାଗଜ ଦାବୀ କରିଥିଲା, "ଯଦି ଏହି ନିର୍ବାଚନକୁ କୋରିଆ କମିଶନ୍ ନାକଚ କରିଦିଏ, ତାହାହେଲେ ସେ ତାର କର୍ତ୍ତବ୍ୟ ସମ୍ପାଦନ କଲା ବୋଲି ଜଣାପଡ଼ିବ ।"

ଏହି ଦମନ ଭିତରେ ଯେଉଁ ନିର୍ବାଚନ ହେଲା, ସେଥିରେ ନିପଟ ପ୍ରତିକ୍ରିୟାଶୀଳ ଲୋକେ ନିର୍ବାଚିତ ହେଲେ । ସେମାନଙ୍କ ଭିତରେ ୮୪ ଜଣ ଜମିଦାର, ୨୭ ଜଣ ବଡ଼ ଶିଳ୍ପମାଲିକ, ୨୩ ଜଣ ଜାପାନଅମଳର ପୁରୁଣା ଅଫିସର୍ ନିର୍ବାଚିତ ହୋଇଥିଲେ । ସିଙ୍ଗ୍‌ମାନ୍‌ରି ସଭାପତି ଏବଂ ଫାସିଷ୍ଟ ଯୁବକବାହିନୀର ନେତା ଲିବୁମ୍‌ସୁକ୍ ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ ହେଲେ । ମିଳିତଜାତିସଂଘର ବାହୁଛାୟା ତଳେ ଏକ ଅତି ପ୍ରତିକ୍ରିୟାଶୀଳ ସରକାର ଗଢ଼ାଗଲା ।

କୋରିଆର ଜନସାଧାରଣ ଏହି ସରକାରକୁ ନିଜର ବୋଲି ଗ୍ରହଣ କଲେ ନାହିଁ । ଉତ୍ତର ଓ ଦକ୍ଷିଣ କୋରିଆର ରାଜନୈତିକ ଦଳମାନେ ଏକ ସମ୍ମିଳନୀରେ ସ୍ଥିରକଲେ ଯେ ସମଗ୍ର କୋରିଆ

ପାଇଁ ଏକ ମିଳିତ ବ୍ୟବସ୍ଥାପକ ସଭା—'ସୁପ୍ରୀମ୍ ପିପ୍‌ଲ୍‌ସ ଏସେମ୍ବ୍ଲି' ନିର୍ବାଚିତ କରାଯିବ ଏବଂ ସେଥିପାଇଁ ସମଗ୍ର କୋରିଆରେ ନିର୍ବାଚନ କରାହେବ । ୧୯୪୮ ଅଗଷ୍ଟ ୨୫ରେ ଉଭୟ କୋରିଆରେ ନିର୍ବାଚନ ଅନୁଷ୍ଠିତ ହେଲା । ଉତ୍ତରକୋରିଆର ଶତକଡ଼ା ୯୯.୭ ଭୋଟଦାତା ଭୋଟ ଦେଇଥିଲେ ଏବଂ ଦକ୍ଷିଣକୋରିଆରେ ସିଙ୍ଗ୍‌ମାନ୍‌ରି ସରକାରର ସମସ୍ତ କଟକଣା ଓ ଦମନ ସତ୍ତ୍ୱେ ଶତକଡ଼ା ୭୭.୫ ଭୋଟଦାତା ନିର୍ବାଚନରେ ଯୋଗ ଦେଇପାରିଲେ । ଦକ୍ଷିଣକୋରିଆର ଭୋଟଦାତା ନିର୍ବାଚନରେ ଯୋଗଦେଇ ଆମେରିକା ପ୍ରତିଷ୍ଠିତ ସିଙ୍ଗ୍‌ମାନ୍‌ରି ସରକାର ପ୍ରତି ନିଜର ଅନାସ୍ଥା ଜ୍ଞାପନ କରିଥିଲେ । ଏହି ନିର୍ବାଚନରେ ୩୨ଟି ରାଜନୈତିକ ଦଳ ଯୋଗ ଦେଇଥିଲେ ଏବଂ ଜନତାର ବିଭିନ୍ନ ଶ୍ରେଣୀର ପ୍ରତିନିଧି 'ସୁପ୍ରୀମ୍ ପିପ୍‌ଲ୍‌ସ ଏସେମ୍ବ୍ଲି'କୁ ନିର୍ବାଚିତ ହୋଇପାରିଲେ । ସର୍ବୋଚ୍ଚ ବ୍ୟବସ୍ଥାପକ ସଭାର ୫୭୨ ସଭ୍ୟଙ୍କ ଭିତରୁ ଜାପାନ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିଥିବା ୨୮୭ ଜଣ ଏବଂ ଆମେରିକାର ଦମନ ଭୋଗିଥିବା ଦକ୍ଷିଣ କୋରିଆର ୧୫୮ ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ ।

'ସୁପ୍ରୀମ୍ ପିପ୍‌ଲ୍‌ସ ଏସେମ୍ବ୍ଲି' ତାର ପ୍ରଥମ ବୈଠକରେ ସୋଭିଏତ୍ ଓ ଆମେରିକାର ସରକାରଙ୍କୁ କୋରିଆରୁ ସୈନ୍ୟ ଉଠାଇ ନେବାପାଇଁ ଏକ ଆବେଦନ ପତ୍ର ପଠାଇଥିଲେ । ସୋଭିଏତ୍ ସରକାର ଏହି ଅନୁରୋଧ ରକ୍ଷା କରି ନିଜ ସୈନ୍ୟମାନଙ୍କୁ ୧୯୪୯ ଜାନୁୟାରି ପହିଲା ପୂର୍ବରୁ ଉଠାଇନେଲେ । କିନ୍ତୁ ଆମେରିକା ସରକାର ନିରୁତ୍ତର ରହିଲେ । ସୋଭିଏତ୍ ସୈନ୍ୟ ଚାଲିଯିବା ପରେ ଆମେରିକା ସୈନ୍ୟ ଖୋଲା ଭାବରେ କୋରିଆରେ ରହିବା କଷ୍ଟକର ହେଲା । ଦକ୍ଷିଣକୋରିଆରେ ଆମେରିକା ସୈନ୍ୟ ଉଠାଇ ନେବାପାଇଁ ଆନ୍ଦୋଳନ ତୀବ୍ରରୁ ତୀବ୍ରତର ହେଲା । ଶେଷରେ

୧୯୪୯ ଜୁନ୍ ମାସରେ ଅମେରିକା କୋରିଆରୁ ନିଜ ସୈନ୍ୟଙ୍କୁ ଉଠାଇନେଲା । କିନ୍ତୁ ଏକ ଚୁକ୍ତିବଳରେ ୫୦୦ ସମର-ବିଶାରଦଙ୍କ ଏକ ସାମରିକ କମିଶନ୍ କୋରିଆରେ ଅବସ୍ଥାପିତ ହେଲେ । ଏହି ସମରବିଶାରଦମାନେ ଦକ୍ଷିଣକୋରିଆ ସୈନ୍ୟମାନଙ୍କୁ ତାଲିମ କରିବାକୁ ଆରମ୍ଭ କରି ସୈନ୍ୟ ବାହିନୀର ପ୍ରତ୍ୟେକ ମୁଖ୍ୟସ୍ଥାନର ଦାୟିତ୍ୱ ଗ୍ରହଣ କଲେ ।

ଏକ କୋରିଆଦେଶ ଭିତରେ ଦୁଇଟି ସରକାର ପ୍ରତିଷ୍ଠିତ ହେଲା । ପ୍ରତ୍ୟେକଟି ନିଜକୁ ସମଗ୍ର କୋରିଆଦେଶର ସରକାର ବୋଲି ଦାବୀ କରିବାକୁ ଲାଗିଲା । ଗୋଟିଏ ସରକାର ଜନତାର ଶକ୍ତି ଓ ସହଯୋଗ ଉପରେ ନିଜକୁ ସୁଦୃଢ଼ ଭାବରେ ପ୍ରତିଷ୍ଠିତ କରିପାରିଲା । ଅନ୍ୟଟି ଆମେରିକାର ବାହୁଛାୟା ତଳେ ନିଜକୁ ବଳୀୟାନ୍ ମନେକଲା ।

---

# ଏଶିଆରେ ହିଟଲାର୍

୧୯୫୦ ଜୁନ ୨୫ ତାରିଖରେ କୋରିଅଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧରେ ଦୁନିଆ ଦେଖିବାକୁ ପାଇଲା, କୋରିଅରେ ହିଟଲରର ନୂଆ ଅବତାର । ପୂର୍ବ ହିଟଲରର କଳକୌଶଳ କୋରିଅ ଯୁଦ୍ଧରେ ଅଧିକ ଆଧୁନିକ ଭାବରେ ଦେଖାଦେଲା । କଳାକୁ ଧଳା ରୂପେ ପ୍ରମାଣ କରିବା, ଆକ୍ରମିତକୁ ଆକ୍ରମଣକାରୀ ରୂପେ ସାବ୍ୟସ୍ତ କରିବା, ସାମ୍ରାଜ୍ୟବାଦୀ ଆକ୍ରମଣକୁ ମୁକ୍ତିସଂଗ୍ରାମ ରୂପେ ଘୋଷଣା କରିବା ଏବଂ

ନିରୀହ ଜନତାଙ୍କୁ ନିର୍ମମଭାବେ ନିପାତକରିବା, ଏହି ବଡ଼ଯନ୍ତ୍ର ହିଁ ଦଲଷ୍ଟି ମାଡ କୋରିଅରେ ପ୍ରକଟିତ ହେଲ ।

କୋରିଅରେ ଅନ୍ୟାୟକାରୀ କିଏ ? ତାହାର ପରିଚୟ ପାଇବାପାଇଁ ସାମ୍ରାଜ୍ୟବାଦୀ ଚକ୍ରାନ୍ତର ଧୂଆଁପରଦାକୁ ଟେକି ପ୍ରକୃତ ତଥ୍ୟ ଅନୁସନ୍ଧାନ କରିବାକୁ ପଡ଼ିବ । ଆମେରିକା ସମ୍ବାଦପତ୍ରରେ ପ୍ରକାଶ ପାଇଛି, ୧୯୪୮ ଅଗଷ୍ଟ ୨୪ରେ ଆମେରିକା ସରକାରଙ୍କ ଅତିଥି ହୋଇ ରହିଥିବାବେଳେ ସଙ୍ଗ୍‌ମାନ୍‌ରି ଲେଫ୍ଟେନାଣ୍ଟମାନଙ୍କ ପାଖକୁ ଏକ ଉପଦେଶ ପଠାଇଥିଲେ । ସେଥିରେ ସେ କହିଥିଲେ, "ଉତ୍ତରକୋରିଅକୁ ଅଭିଯାନ କରିବା ହେଉଛି ଆମର ସର୍ବପ୍ରଥମ ଗୁରୁତର କର୍ତ୍ତବ୍ୟ ।" ବର୍ଷଶେଷରେ ଆମେରିକାର ଏକ ଯୁଦ୍ଧଜାହାଜର ଅଭ୍ୟର୍ଥନା ସଭାରେ ସିଙ୍ଗ୍‌ମାନ୍‌ରି ଘୋଷଣା କରିଥିଲେ , "ଯୁଦ୍ଧଦ୍ୱାରା ଦେଶର ଏକତ୍ରୀକରଣ କରିବାକୁ ପଡ଼ିବ ।" ସେହି ସଭାରେ ଦକ୍ଷିଣକୋରିଅର ଯୁଦ୍ଧମନ୍ତ୍ରୀ ପ୍ରକାଶ କରିଥିଲେ, "ଆମକୁ ନିଜ ଇଚ୍ଛାରେ କରିବାକୁ ଦିଆଯାଉଥିଲେ, ବର୍ତ୍ତମାନ ଯୁଦ୍ଧଆରମ୍ଭ ହୋଇସାରନ୍ତାଣି । କିନ୍ତୁ ସେମାନେ (ଅର୍ଥାତ୍ ଆମେରିକା ସରକାର) ପ୍ରସ୍ତୁତ ହେବାଯାଏଁ ଆମକୁ ଅପେକ୍ଷା କରିବାକୁ ପଡୁଛି । ସେମାନେ ଆମକୁ ବରାବର କହୁଛନ୍ତି, "ନା, ନା, ଅପେକ୍ଷା କର, ତୁମେ ପ୍ରସ୍ତୁତ ହୋଇନାହିଁ ।" ପ୍ରାୟ ସେହି ସମୟରେ କୋରିଅରେ ଥିବା ଆମେରିକା ସାମରିକ କମିଶନ୍‌ର ନେତା ଜେନେରାଲ୍ ରବର୍ଟସ୍ ସାମ୍ବାଦିକ ସମ୍ମିଳନୀରେ କହିଥିଲେ, "ଦକ୍ଷିଣକୋରିଅରେ ଏ ଲକ୍ଷ ସୈନ୍ୟ ଓ ଅଫିସର୍ ଯୁଦ୍ଧଭୂମିକୁ ଯିବାପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି ।" ଏହାପରେ ୧୯୪୯ ଡିସେମ୍ବର ୩୦ ତାରିଖରେ ସାମ୍ବାଦିକ ସମ୍ମିଳନୀରେ ସିଙ୍ଗ୍‌ମାନ୍‌ରି ଘୋଷଣା କଲେ, "ନୂଆ ବର୍ଷରେ ଆମେ ସମସ୍ତେ ଆମର ଅଧୀନରୁ ଚାଲିଯାଇଥିବା

ଅଞ୍ଚଳକୁ ଉଦ୍ଧାର କରିବାକୁ ଉଦ୍ୟମ କରିବୁ ।" ସେ ବୁଝାଇବାକୁ ଲାଗିଲେ, ଏପର୍ଯ୍ୟନ୍ତ ଦକ୍ଷିଣକୋରିଆ ଶାନ୍ତିମାର୍ଗ ଧରିଥିଲା, ଆମେରିକା ତଥା ଜାତିସଂଘର ନୀତି ଅନୁସରଣ କରୁଥିଲା, କିନ୍ତୁ "ବର୍ତ୍ତମାନ ଆମର ସାର୍ବଭୌମ କ୍ଷମତା ପ୍ରୟୋଗ କରିବା ଫଳରେହିଁ ଏକତ୍ରୀକରଣ ସମ୍ଭବ ହେବ । ମିଳାମିଶା କିମ୍ବା ମିଳିତ ଆଲୋଚନାର ପନ୍ଥାକୁ ବାଦ୍ ଦେବାକୁ ପଡିବ ।" ୧୯୫୦ ଜାନୁଆରୀ ୨୬ରେ ଆମେରିକା ସହିତ ଦକ୍ଷିଣ କୋରିଆର ଏକ 'ପରସ୍ପର ସାହାଯ୍ୟ ଚୁକ୍ତି' ସ୍ୱାକ୍ଷରିତ ହେଲା ଏବଂ ଦକ୍ଷିଣ କୋରିଆ ଆମେରିକାର ଆତ୍ମରକ୍ଷା ପରିସର ଭିତରକୁ ଟାଣି ହୋଇ ଆସିଲା ।

୧୯୫୦ ମାର୍ଚ୍ଚ ୧୭ରେ 'ନିଉୟର୍କ ଟାଇମସ୍' କାଗଜର ସମ୍ବାଦଦାତା ସୁଲଜ୍ଞର୍ ଏକ ଗୁରୁତ୍ୱପୂର୍ଣ୍ଣ ଖବର ସେଓଲଠାରୁ ନିଜ କାଗଜକୁ ପଠାଇଥିଲେ । ସେ ଲେଖିଥିଲେ ଦକ୍ଷିଣକୋରିଆ ଆସେମ୍ବ୍ଲିର ତେରଜଣ ସଭ୍ୟ ଦେଢବର୍ଷରୁ ଦଶବର୍ଷ ପର୍ଯ୍ୟନ୍ତ ଜେଲଦଣ୍ଡ ପାଇଛନ୍ତି । ସେମାନଙ୍କର ଅପରାଧ ହେଉଛି, (୧) କୋରିଆ କମିଶନ୍‌କୁ ଏକ ଆବେଦନପତ୍ର ପ୍ରଦାନ, (୨) ମନ୍ତ୍ରୀମଣ୍ଡଳର ଦୁର୍ନୀତି ପ୍ରକାଶକରି ମନ୍ତ୍ରୀମଣ୍ଡଳ ପ୍ରତି ସାଧାରଣଙ୍କର ବିଶ୍ୱାସ ହ୍ରାସ-କରଣ, (୩) ବଜେଟ୍‌ର ବିରୋଧ କରିବା ଚେଷ୍ଟା, (୪) ଉତ୍ତର କୋରିଆକୁ ଆକ୍ରମଣ କରିବା ପ୍ରସ୍ତାବର ବିରୁଦ୍ଧାଚରଣ, (୫) ଶାସନବିଧାନର ପରିବର୍ତ୍ତନପାଇଁ ଚେଷ୍ଟା । ଏହି ଅପରାଧ ତାଲିକାର ଚତୁର୍ଥ ସଂଖ୍ୟାଟିରେ ରହିଛି—ଉତ୍ତର କୋରିଆକୁ ଆକ୍ରମଣ କରିବା ପ୍ରସ୍ତାବର ବିରୁଦ୍ଧାଚରଣ । ଏଥିରୁ ଜଣାପଡୁଛି, ଉତ୍ତରକୋରିଆକୁ ଆକ୍ରମଣ କରିବା ପ୍ରସ୍ତାବ ଆଲୋଚିତ ହେଉଥିଲା, ଏବଂ ଏହାର ବିରୁଦ୍ଧାଚରଣ ଦଣ୍ଡନୀୟ ବିବେଚିତ ହୋଇଥିଲା ।

କୋରିଆ ଯୁଦ୍ଧର ୫ ସପ୍ତାହ ପୂର୍ବରୁ ମେ ୧୯ ତାରିଖରେ କୋରିଆର 'ମାର୍ଶାଲ ସାହାଯ୍ୟ'ର ପରିଚାଳକ ଜନସନ୍ ଆମେରିକା

ପ୍ରତିନିଧି ସମ୍ବାଦ 'ଖର୍ଚ୍ଚ ମଞ୍ଜୁର କମିଟି' ଆଗରେ ସାକ୍ଷ୍ୟ ଦେବାକୁ ଯାଇ କହିଥିଲେ, "ଦକ୍ଷିଣକୋରିଆ ବାହିନୀର ଏକଲକ୍ଷ ଅଫିସର୍ ଓ ସୈନ୍ୟ ଆମେରିକା ଅସ୍ତ୍ରରେ ସଜ୍ଜିତ ହୋଇ, ଆମେରିକାନ୍ ସାମରିକ କମିଶନ୍ ଦ୍ୱାରା ତାଲିମ ହୋଇ ପୂରା ପ୍ରସ୍ତୁତ ଅଛନ୍ତି । ସେମାନେ ଯେକୌଣସି ମୁହୂର୍ତ୍ତରେ ଯୁଦ୍ଧ ଆରମ୍ଭ କରିପାରିବେ ।" ଠିକ୍ ଏହି ସମୟରେ ସିଙ୍ଗମାନ୍‌ରୀ ଦୁଇଥର ସାମ୍ବାଦିକ ସମ୍ମିଳନୀରେ ପ୍ରକାଶ କରିଥିଲେ, "ମେ ଓ ଜୁନମାସ କୋରିଆର ଇତିହାସରେ ସଙ୍କଟପୂର୍ଣ୍ଣ ସମୟ ହେବ ।"

ଧରା ହୋଇଥିବା ଦକ୍ଷିଣ କୋରିଆ ଅଫିସର୍‌ମାନଙ୍କ ବକ୍ତବ୍ୟ ଅନୁସାରେ, ମେ ମାସରେ ସାମରିକ ଅଫିସର୍‌ମାନଙ୍କ ଏକ ସଭାରେ ଉତ୍ତରକୋରିଆ ଅଭିଯାନପାଇଁ ତିନୋଟି ଯୋଜନା ଆଲୋଚିତ ହୋଇଥିଲା । ୧୯୫୦ ମେ ୨୯ ତାରିଖରେ ଉତ୍ତର କୋରିଆ ରାଜଧାନୀ ପିଙ୍ଗ୍‌ୟଙ୍ଗ୍‌ଠାରୁ 'ଡେଲିଙ୍ଗ୍‌ଡେଲ୍'ର ସମ୍ବାଦଦାତା ଖବର ପଠାଇଥିଲେ ଯେ ଦକ୍ଷିଣ କୋରିଆ ସୈନ୍ୟମାନେ ୩୮ ଅକ୍ଷାଂଶ ନିକଟରେ ସମବେତ ହୋଇ ଉତ୍ତେଜନା ସୃଷ୍ଟି କରୁଛନ୍ତି, ଏବଂ ଆମେରିକାନ୍ ଉଡ଼ାଜାହାଜମାନେ ଦକ୍ଷିଣ କୋରିଆର ଗରିଲା ଅଞ୍ଚଳମାନଙ୍କରେ ପଇନ୍ତରା ମାରୁଛନ୍ତି । ଠିକ୍ ଏହି ସମୟରେ ଆମେରିକାନ୍ ସାମ୍ବାଦିକ ସୁଲଜବର୍ଗ ହଂକଂଠାରୁ 'ନିଉୟର୍କ ଟାଇମ୍ସ'କୁ ଲେଖିପଠାଇଲେ, "ଆମେରିକା ଦ୍ୱାରା ତାଲିମ୍ ହୋଇଥିବା ସମସ୍ତ ବୈଦେଶିକ ସେନାମାନଙ୍କ ମଧ୍ୟରେ ଦକ୍ଷିଣକୋରିଆ ସେନା ସବୁଠାରୁ ଭଲଭାବରେ ଆମେରିକାନ୍ ଛାଞ୍ଚରେ ଗଢ଼ାହୋଇଛନ୍ତି । ସେମାନଙ୍କର ପୋଷାକ ଆମେରିକାନ୍ ଢଙ୍ଗର, ସେମାନେ ଆମେରିକା ତିଆରି ଯାନବାହାନ ବ୍ୟବହାର କରନ୍ତି, ଆମେରିକା ତିଆରି ଅସ୍ତ୍ରଶସ୍ତ୍ର ଧାରଣ କରନ୍ତି ଏବଂ ବହୁବର୍ଷ ଧରି ଅତି ନିବିଡ଼ଭାବରେ

ତାଲିମ୍ ହୋଇଛନ୍ତି । ଅନେକ ବିଷୟରେ ସେମାନେ ଆମେରିକାନ୍-ମାନଙ୍କ ପରି ଆଚରଣ କରନ୍ତି । ତେଣୁ ସେମାନଙ୍କୁ ଦେଖି ଆଗନ୍ତୁକମାନେ ବିସ୍ମିତ ହୋଇ ବିଚାରନ୍ତି ଯେ ଆମେରିକାନ୍ ସୈନ୍ୟମାନେ ଏବେ ସୁଦ୍ଧା କୋରିଆ ଦଖଲ କରି ରହିଛନ୍ତି ।”

ଜୁନ୍ ୫ ତାରିଖରେ 'ଟାଇମ୍ସ' କାଗଜ ଅଗ୍ରଲେଖ କରି ଲେଖିଥିଲା, “ଦକ୍ଷିଣ କୋରିଆ ବାହିନୀ ଶ୍ରେଷ୍ଠ ହେଲେ କ'ଣ ହେବ, ଏହା ଏସିଆର ସର୍ବୋତ୍କୃଷ୍ଟ ବାହିନୀ ।” ସାମରିକ କମିଶନ୍‌ର ନେତା ଜେନେରାଲ୍ ରବର୍ଟସ୍ 'ହେରାଲ୍ଡ ଟ୍ରାଇବ୍ୟୁନ୍' କାଗଜର ସମ୍ପାଦକ ତାଙ୍କୁ ସାକ୍ଷାତ କରି କହିଥିଲେ, “ଆମେରିକାର ଟିକସଦାତା କୋରିଆରେ ଏକ ସୈନ୍ୟବାହିନୀ ପାଇଛନ୍ତି, ଯାହାକି ଏ ଦେଶରେ ତାର ଖଟାଯାଇଥିବା ପୁଞ୍ଜିକୁ ରକ୍ଷାକରିବା ପାଇଁ ସୁନ୍ଦର ଜଗୁଆଳ କୁକୁରର କାମ କରିବ । × × × ୫୦୦ ଜଣ ବୁଦ୍ଧିମାନ ଯୁଦ୍ଧପୁରୁଖା ଆମେରିକାନ୍ ଅଫିସର୍‌ଙ୍କୁ ପୂର୍ବଭାବରେ ନିଯୋଜିତ କରିବା ଫଳରେ ଆମ ପାଇଁ ଲଢେଇ କରିବାକୁ ପ୍ରସ୍ତୁତ ଏକଲକ୍ଷ ସୈନ୍ୟ ତିଆରି ହୋଇ ପାରିଛନ୍ତି । ପ୍ରତ୍ୟେକ ସୈନ୍ୟ ଧ୍ୱଜବାହିନୀରେ ୧୩।୧୪ ଜଣ ଆମେରିକାନ୍ ଅଫିସର୍ ନିଯୁକ୍ତ ଅଛନ୍ତି । ସେମାନେ କୋରିଆ ଅଫିସର୍‌ମାନଙ୍କ ସହିତ କାମ କରୁଛନ୍ତି । ୩୮ ଅକ୍ଷାଂଶର ଯୁଦ୍ଧସାମ୍ମୁଖ୍ୟରେ ସେମାନେ କୋରିଆ ଅଫିସର୍‌ମାନଙ୍କ ସହିତ ରହୁଛନ୍ତି ।” ଏହା ଯୁଦ୍ଧଆରମ୍ଭର ୨୧ ଦିନପୂର୍ବର ବିବୃତି । ସାମ୍ବାଦିକ ସୁଲଜ୍‌ବର୍ଗ ନିଜକାଗଜକୁ ଖବର ପଠାଇଲେ, “ଦକ୍ଷିଣ କୋରିଆ ନେତାମାନଙ୍କ ମୁହଁରୁ ପ୍ରାୟ ସମସ୍ତ ଯୁଦ୍ଧଆଲୋଚନା ଶୁଣାଯାଉଛି ।”

ଏହି ସମୟରେ ଅବସ୍ଥା ଦ୍ରୁତଭାବରେ ଗଢିଉଠିଲା । ଆମେରିକାର ଏକ ଉଚ୍ଚସ୍ତରୀୟ ତଦନ୍ତକାରୀ କମିଶନ୍ ସୁଦୂର

ପ୍ରାଚ୍ୟକୁ ଅସିଲେ । ଏହି କମିଶନ୍‌ର ସଭ୍ୟଥିଲେ, ଯୁଦ୍ଧସେକ୍ରେଟେରୀ ଜନ୍‌ସନ୍, ଚିଫ୍‌ଅଫ୍‌ଷ୍ଟାଫର ପ୍ରଧାନକର୍ତ୍ତା ବ୍ରାଡଲେ, ଏବଂ ଅମେରିକା ସରକାରଙ୍କ ବୈଦେଶିକ ନୀତିର ପରାମର୍ଶଦାତା ରିପବ୍ଲିକାନ୍ ନେତା ଜନ୍ ଡାଲସ୍ । ଏମାନେ ଜେନେରାଲ୍ ମାକ୍‌ଆର୍ଥରଙ୍କ ସହିତ ପ୍ରଶାନ୍ତ ମହାସାଗର-ପରିସ୍ଥିତି ଆଲୋଚନା କରିଥିଲେ । ଏହା ପରେ ଜୁନ୍ ୨ଯ୍ୟ ସପ୍ତାହରେ ଜନ୍ ଡ଼ାଲସ୍ କୋରିଆ ପରିଦର୍ଶନ କରିବାକୁ ଅସିଲେ । ତାଙ୍କର କୋରିଆପରିଦର୍ଶନର କେତେକ କୌତୁହଳପ୍ରଦ ଛବି ଅମେରିକାର ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଛି । ଜେନେରଲ୍ ରବର୍ଟସଙ୍କ ଭାଷାରେ ଯାହା ଯୁଦ୍ଧ ସାମ୍ମୁଖ୍ୟ, ସେହି ଉତ୍ତରଦକ୍ଷିଣ ସୀମା ୩୮ ଅକ୍ଷାଂଶ ପରିଦର୍ଶନ କଲାବେଳେ ଗୋଟିଏ ସଶସ୍ତ୍ର ଯୁଦ୍ଧଗାଡ଼ିରେ ଡାଲସ୍ ଛିଡ଼ା ହେବାର ଫୋଟ ଉଠିଛି । ଅନ୍ୟ ଏକ କୌତୁହଳ ଉଦ୍ରେକକାରୀ ଛବି ହେଉଛି, ଡାଲସ୍ ୩୮ ଅକ୍ଷାଂଶ ନିକଟରେ ଯୁଦ୍ଧଟ୍ରେଞ୍ଚ (ଖାତ) ପରିଦର୍ଶନ କଲାବେଳର ଫୋଟ । ସୋଭିଏଟ୍ ପ୍ରତିନିଧି ଜୋସେଫ୍ ମଲିକଙ୍କ ଭାଷାରେ, "ମିଷ୍ଟର ଡ଼ାଲସ୍ ଓ ମିଷ୍ଟର ମୁଚିଓ ଫଟ ତୋଳିବା ପାଇଁ ଟ୍ରେଞ୍ଚ ଭିତରକୁ ଯାଇଥିଲେ, ଏହି କଳ୍ପନା କେହି କରିବେ ନାହିଁ । ଡାଲସ୍ ଏହାଠାରୁ ଅଧିକ ନୀରସ ଏବଂ ତାଙ୍କର ଯୁଦ୍ଧଖୋର ସ୍ୱଭାବ ଅନୁରୂପ ବିଷୟ ଆଲୋଚନା କରିବାପାଇଁ ଯାଇଥିଲେ ।"

ଯୁଦ୍ଧସାମ୍ମୁଖ୍ୟ ପରିଦର୍ଶନକରି ଫେରିବାପରେ ଜୁନ୍ ୧୯ ତାରିଖରେ ଜନ୍‌ଡାଲସ୍ ଦକ୍ଷିଣକୋରିଆ ଏସେମ୍ବ୍ଲିରେ ଏକ ଭାଷଣ ଦେଇଥିଲେ । ସେ ଏସେମ୍ବ୍ଲି ସଭ୍ୟମାନଙ୍କୁ ଉଦ୍‌ବୋଧନ କରି କହିଥିଲେ, "ସ୍ୱାଧୀନ ଦୁନିଅର ଆଖି ତୁମମାନଙ୍କ ଉପରେ ନିବଦ୍ଧ ରହିଛି । କମ୍ୟୁନିଷ୍ଟମାନଙ୍କ ସହିତ ସାଲିସ୍ କରିବାର ଅର୍ଥ ଧ୍ୱଂସ ପଥରେ ଚାଲିବା ।" ଶ୍ରୋତାମାନଙ୍କୁ ଡ଼ାଲସ୍ ପ୍ରତିଶ୍ରୁତି ଦେଇଥିଲେ,

"କମ୍ୟୁନିଜମ୍ ବିରୁଦ୍ଧରେ ଲଢୁଥିବା ଦକ୍ଷିଣକୋରିଆକୁ ନୈତିକ, ଆର୍ଥିକ, ସକଳପ୍ରକାର ଆବଶ୍ୟକୀୟ ସାହାଯ୍ୟ ଦେବାକୁ ଆମେରିକା ପ୍ରସ୍ତୁତ ଅଛି ।" ସେହି ସଭାରେ ସିଙ୍ଗ୍‌ମାନ୍‌ରି ଆସ୍ଫାଳନ କରିଥିଲେ, "ଯଦି ଗଣତନ୍ତ୍ରକୁ ଶୀତଳଯୁଦ୍ଧରେ (ଧମକ ରାଜନୀତିରେ) ରକ୍ଷା କରିପାରିବୁ ନାହିଁ, ଆମେ ଗରମ ଯୁଦ୍ଧରେ (ତୋପବନ୍ଧୁକ ଲଢେଇରେ) ବିଜୟ ହାସଲ କରିବୁ ।"

ଏହି ସମୟରେ ଉଭୟ କୋରିଆର ମିଳନ ପାଇଁ ଆନ୍ଦୋଳନ ଅତି ପ୍ରବଳ ଭାବରେ ଦେଖାଦେଇଥିଲା । ଦକ୍ଷିଣକୋରିଆ ଏସେମ୍ବ୍ଲିର ଅନେକ ସଭ୍ୟ ମଧ୍ୟ ଶାନ୍ତିପୂର୍ଣ୍ଣ ଏକତ୍ରୀକରଣ ପାଇଁ ପ୍ରସ୍ତୁତ ଥିଲେ । ଉତ୍ତରକୋରିଆ ସରକାର ଏକ ଶାନ୍ତିପୂର୍ଣ୍ଣ ମିଳନର ପ୍ରସ୍ତାବ ଆଗତ କଲେ । ପ୍ରସ୍ତାବଟି ହେଉଛି, ଉତ୍ତର ଓ ଦକ୍ଷିଣ କୋରିଆର ବ୍ୟବସ୍ଥାପକ ସଭା ମିଳିତ ଭାବରେ ସମଗ୍ର କୋରିଆର ଶାସନଭାର ବହନ କରିବେ ଏବଂ ଏମାନେ ଶାନ୍ତିପୂର୍ଣ୍ଣ ଏକତ୍ରୀକରଣ ପାଇଁ ବ୍ୟବସ୍ଥା ଗ୍ରହଣ କରିବେ । ଉତ୍ତରକୋରିଆ ସରକାରଙ୍କ ଏହି ପ୍ରସ୍ତାବ ଦକ୍ଷିଣକୋରିଆ ସରକାରଙ୍କ ସହିତ ଆଲୋଚନା କରିବା ପାଇଁ ତିନିଜଣ ସରକାରୀ ପ୍ରତିନିଧି ଦକ୍ଷିଣ କୋରିଆକୁ ପଠାଗଲେ । ଏହି ପ୍ରତିନିଧିମାନେ ଦକ୍ଷିଣସୀମାନ୍ତରେ ପହଞ୍ଚିବାମାତ୍ରେ ଦକ୍ଷିଣକୋରିଆ ସରକାରଙ୍କ ଦ୍ୱାରା ଗିରଫ ହେଲେ । କିନ୍ତୁ ଦକ୍ଷିଣକୋରିଆର ଚାରିଆଡ଼େ ଉତ୍ତରକୋରିଆ ପ୍ରସ୍ତାବ ସମର୍ଥନରେ ମତ ପ୍ରକାଶ ପାଇବାକୁ ଲାଗିଲା । ଏହି ପରିସ୍ଥିତିରେ ଆମେରିକା ସରକାରଙ୍କ ଜଣେ ପ୍ରଧାନ ପ୍ରତିନିଧି, ଡାଲସ୍ ଦକ୍ଷିଣକୋରିଆ ବ୍ୟବସ୍ଥାପକ ସଭାରେ ଯେଉଁ ଉଦ୍‌ବୋଧନ ଦେଲେ, ତାହାର ତାତ୍ପର୍ଯ୍ୟ ହେଉଛି, "ତୁମେ ଉତ୍ତରକୋରିଆ ସରକାର ସହିତ ମିଳାମିଶା କରନାହିଁ । ତୁମେ ଲଢ଼େଇ କଲେ ଆମେ ସକଳପ୍ରକାର ସାହାଯ୍ୟ କରିବୁ ।"

ଜୁନ ୨୧ରେ ଦକ୍ଷିଣକୋରିଅକୁ ବଦାନ୍ୟଭାଷାରେ ସେ କହିଥିଲେ, "କୋରିଅ ଅଳ ବନ୍ଧୁହୀନ ବା ଏକାକୀ ନୁହେଁ । × × × ମାକ୍ଆର୍ଥରଙ୍କ ସହିତ ମୋର ଆଲୋଚନା ପରେ ଠିକ୍ କାମ ଆରମ୍ଭ ହେବ ।" ସିଙ୍ଗ୍‌ମାନ୍‌ରିଙ୍କୁ ଏକ ବଦାନ୍ୟକାଳୀନ ପତ୍ରରେ ଡାଲେସ୍ ଲେଖିଥିଲେ, "ଯେଉଁ ମହାନାଟକ ଅଭିପ୍ରକାଶ କରୁଛି, ସେଥିରେ ଆପଣଙ୍କ ଦେଶ ଯେଉଁ ନିଷ୍ପତ୍ତିମୂଳକ ଭୂମିକା ଗ୍ରହଣ କରିବ, ମୋର ମତରେ ତାହାର ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି ।" ଏହା ଯୁଦ୍ଧ ଆରମ୍ଭ ହେବାର ୪ଦିନ ପୂର୍ବର ସନ୍ଦେଶ । ବାଲ୍ଟିମୋର 'ଅବ୍‌ଜର୍‌ଭର୍' କାଗଜର ମତରେ ଯୁଦ୍ଧ ଆରମ୍ଭରେ ଯେଉଁ ଘଟଣା ଘଟିଥିଲେ, ପରିସ୍ଥିତି ଯେପରି ଗତି କରୁଥିଲା, ଦକ୍ଷିଣକୋରିଅ ଆପେ ଆପେ ଉତ୍ତର କୋରିଅରେ ମିଶିଯାଇଥାନ୍ତା । ଏହା ପୂର୍ବରୁ ଅନୁଷ୍ଠିତ ଏକ ନିର୍ବାଚନରେ ସିଙ୍ଗ୍‌ମାନ୍‌ରି ଦଳ ସମ୍ପୂର୍ଣ୍ଣଭାବରେ ପରାସ୍ତ ହୋଇଥିଲା, କିନ୍ତୁ ଆମେରିକାନ୍ କର୍ତ୍ତୃପକ୍ଷ ସିଙ୍ଗ୍‌ମାନ୍‌ରିଙ୍କୁ ଜବରଦସ୍ତ ଗାଦିରେ ବସାଇ ରଖିଥିଲେ । ମାର୍ଶାଲ୍ ଯୋଜନାର ପ୍ରଧାନ ଗୃଳକ ହାଫ୍‌ମ୍ୟାନ୍‌ଙ୍କ ବିବୃତିରୁ ଜଣାଯାଉଥିଲା, ଦକ୍ଷିଣକୋରିଅର ଅର୍ଥନୀତି ପୁରାପୁରି ଭାଙ୍ଗିବା ପରିସ୍ଥିତିରେ ପହଞ୍ଚିଯାଇଥିଲା, ଏବଂ ଆମେରିକା ସାହାଯ୍ୟ ନ ଦେଲେ ସରକାର ତିଷ୍ଠିବାର ଉପାୟ ନଥିଲା । ଏହି ପରିସ୍ଥିତିରେ ଉତ୍ତରକୋରିଅର ସୁଶୃଙ୍ଖଳ ଅବସ୍ଥା ଦକ୍ଷିଣକୋରିଅ ବାସିନ୍ଦାଙ୍କ ଦୃଷ୍ଟି ଆକର୍ଷଣ କରି ସିଙ୍ଗ୍‌ମାନ୍‌ରି ଶାସନ ପକ୍ଷରେ ଏକ ବଡ଼ ବିପଦର କାରଣ ହୋଇଥିଲା ।

ଜୁନ୍ ୨୪ର ଏକ ରିପୋର୍ଟରେ କୋରିଅକମିଶନ୍ ଲେଖିଛି, "ମିଲିଟାରୀ ଅବଜରଭର ଦଳ ପରିଦର୍ଶକମାନେ କହନ୍ତି ୩୮ ଅକ୍ଷାଂଶର ଉତ୍ତରପଟେ ଉତ୍ତରକୋରିଅ ବାହିନୀର ଅସାଧାରଣ ଗତିବିଧି ପରିଲକ୍ଷିତ ହେଉନାହିଁ । ତେଣୁ ସୀମାନ୍ତର ସାଧାରଣ ଅବସ୍ଥା ଚଞ୍ଚଳ

ବଦଳିବାର କୌଣସି କାରଣ ଦିଶୁନାହିଁ ।" ଯୁଦ୍ଧରେ ଧରାପଡ଼ିଥିବା ଦକ୍ଷିଣକୋରିଆ ଅଫିସରମାନେ କହନ୍ତି, ଜୁନ୍ ୨୪ ତାରିଖରେ ସେମାନଙ୍କର ମାମୁଲି ଶନିବାର ଛୁଟି ରଦ୍ଦ କରିଦିଆଯାଇ ପରଦିନ ଉତ୍ତରକୋରିଆକୁ ଅଭିଯାନ କରିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ୨୫ ତାରିଖ ଭୋରରୁ ଯୁଦ୍ଧ ଆରମ୍ଭ ହେଲା ।

ଯୁଦ୍ଧ ଆରମ୍ଭ-ପର କେତୋଟି ଅତି ଗୁରୁତ୍ୱପୂର୍ଣ୍ଣ ଖବର ସାମ୍ରାଜ୍ୟବାଦୀ ସମ୍ବାଦ ପରିବେଶକମାନେ ସାଧାରଣଙ୍କୁ ଯୋଗାଇ ନାହାନ୍ତି । ଜୁନ୍ ୨୫ ତାରିଖରେ ଉତ୍ତରକୋରିଆର ଅଭ୍ୟନ୍ତରୀଣ ମନ୍ତ୍ରୀ ଏକ ବକ୍ତୃତାରେ କହିଛନ୍ତି, ଦକ୍ଷିଣକୋରିଆ ସୈନ୍ୟମାନେ ସେହିଦିନ ସ୍ୱତଃ ନପାହୁଣୁ ଉତ୍ତରକୋରିଆକୁ ମାଡ଼ିଆସିଛନ୍ତି । ଅଭ୍ୟନ୍ତରୀଣ ମନ୍ତ୍ରୀଙ୍କ ଆଦେଶ ପାଇ ଉତ୍ତରକୋରିଆ ସୈନ୍ୟମାନେ ପ୍ରତିଆକ୍ରମଣ କରି ଦକ୍ଷିଣକୋରିଆର ଅଭିଯାନକୁ ପ୍ରତିରୋଧ କରୁଛନ୍ତି । ସେ ପୁଣି କହିଛନ୍ତି, ଉତ୍ତରକୋରିଆ ସରକାର ଦକ୍ଷିଣ କୋରିଆ ସରକାରଙ୍କୁ ସତର୍କ କରାଇ ଦେଉଛନ୍ତି ଯେ ସେମାନଙ୍କର ବେପରୁଆ ଉତ୍ତେଜନାମୂଳକ କାର୍ଯ୍ୟ ବନ୍ଦ ନହେଲେ ଉତ୍ତରକୋରିଆ ସମୁଚିତ ବ୍ୟବସ୍ଥା ଗ୍ରହଣ କରିବ । ଜୁନ୍ ୨୫ ତାରିଖର ଏହି ଗୁରୁତ୍ୱପୂର୍ଣ୍ଣ ବକ୍ତୃତା ସାମ୍ରାଜ୍ୟବାଦୀମାନେ ନିରାପତ୍ତାପରିଷଦର ବିଚାରକୁ ଆଣି ନଥିଲେ ।

ଅନ୍ୟଏକ ଗୁରୁତ୍ୱପୂର୍ଣ୍ଣ ଖବର ହେଉଛି, ଜୁନ ୨୫ର ଦକ୍ଷିଣକୋରିଆ ସରକାରର ଏକ ସାମରିକ ଇସ୍ତାହାର । ଏଥିରେ ଦାବୀ କରାହୋଇଛି, ଦକ୍ଷିଣକୋରିଆ ସୈନ୍ୟମାନେ 'ହାଇଜୁ' ଉପରେ ପ୍ରତିଆକ୍ରମଣ ଚଳାଇଛନ୍ତି । ହାଇଜୁ ୩୮ ଅକ୍ଷାଂଶର ଉତ୍ତରରେ ଅବସ୍ଥିତ । ଏହି ଇସ୍ତାହାରରୁ ଜଣାଯାଉଛି ଜୁନ ୨୫ ରେ ଦକ୍ଷିଣକୋରିଆ ସୈନ୍ୟ ଉତ୍ତର କୋରିଆରେ ଯୁଦ୍ଧ କରୁଥିଲେ ।

କିନ୍ତୁ ଏହି ଧରଣର ଖବର ସମ୍ବାଦପତ୍ରମାନଙ୍କର ଶିରୋନାମା ପୂର୍ଣ୍ଣ କରିନାହିଁ । କେଉଁ କେଉଁ ଖବର କାଗଜ ଅତି ନଗଣ୍ୟ ସ୍ଥାନରେ ଏହି ଖବର ପ୍ରକାଶ କରିଛନ୍ତି, ଅନ୍ୟମାନେ ଏହି ସମ୍ବାଦକୁ ଚାପିବାକୁ ଚେଷ୍ଟା କରିଛନ୍ତି ।

ଉତ୍ତର କୋରିଆ ସୈନ୍ୟମାନେ ସେଓଲ ଦଖଲ କରିବା ପରେ ସିଙ୍ଗମାନଙ୍କ ସରକାରର ଅନେକ ଗୁପ୍ତ ଦଲିଲ ହସ୍ତଗତ କରିପାରିଛନ୍ତି । ଏଥିରେ ଯୁଦ୍ଧର ଉତ୍ପତ୍ତି ସମ୍ପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ରହିଛି । ସେସବୁର ଫୋଟ ଉଠାଇ ଉତ୍ତର କୋରିଆ ସରକାର ମିଳିତଜାତିସଂଘର ଅନୁସନ୍ଧାନପାଇଁ ପଠାଇଦେଇଛନ୍ତି । ଆମେରିକା କର୍ତ୍ତୃପକ୍ଷ କୋରିଆଯୁଦ୍ଧ ବହୁ ଆଗରୁ ଯୋଗାଡ କରୁଥିବା ପ୍ରମାଣ ଏଥିରେ ରହିଛି । 'କୋରିଆ କମିଶନ୍' କିପରି ଆମେରିକା ସରକାରର ଇଚ୍ଛାଅନୁରୂପ ମତ ଦେବ, ସେଥିପାଇଁ ଯେଉଁ ଜଣେ ଦୁଇଜଣ ସଭ୍ୟ ସ୍ୱାଧୀନ ମନୋଭାବର ସୂଚନା ଦେଉଥିଲେ ସେମାନଙ୍କ ସ୍ଥାନରେ ଅନ୍ୟମାନଙ୍କୁ କିପରି ନିଆଗଲା, ସିରିଆ ପ୍ରତିନିଧିଙ୍କୁ ବଦଳାଇ ତୁର୍କୀର ପ୍ରତିନିଧିଙ୍କୁ ନିଆଗଲା, ଏସବୁ ବିବରଣୀ ଏହି ଦଲିଲମାନଙ୍କରେ ଅଛି । ଏହି ଦଲିଲମାନଙ୍କର ସତ୍ୟତା ପ୍ରତି ଆମେରିକାନ୍ ମହଲରୁ ଆଜିଯାଏ କୌଣସି ସନ୍ଦେହ ଆରୋପ କରାଯାଇନାହିଁ । କେବଳ ନୀରବ ରହି, ଏସବୁ ସମ୍ପର୍କରେ କୌଣସି ଆଲୋଚନା ନକରି ଦଲିଲରେ ଥିବା ତଥ୍ୟକୁ ସାଧାରଣଙ୍କ ଠାରୁ ଲୁଚାଇରଖିବା ଉଦ୍ୟମ ହେଉଛି । ଆମେରିକା ତରଫରୁ କୌଣସି ଯୁକ୍ତିଯୁକ୍ତ ପ୍ରତିବାଦ ନ ହେବାଯାଏ, ଏହିସବୁ ଦଲିଲରୁ ପ୍ରକାଶ ପାଉଥିବା ଅଭିଯୋଗ ସଠିକ ବୋଲି ଧରିନେବାକୁ ହେବ ।

ଏହାଛଡ଼ା ଯୁଦ୍ଧରେ ଧରାପଡିଥିବା ଦକ୍ଷିଣ କୋରିଆର ବହୁ ସରକାରୀ ନେତା ଓ ସାମରିକ ଅଫିସର୍ ଯୁଦ୍ଧଆୟୋଜନ ସମ୍ପର୍କରେ

ବାଟଶପ ବିବରଣୀ ଯୋଗାଇଛନ୍ତି । ସିଙ୍ଗ୍‌ମାନ୍‌ଙ୍କ ପ୍ରଧାନ ସହକାରୀଙ୍କ ପରାମର୍ଶଦାତା ଧରା ପଡିବା ପରେ ଜୁଲାଇ ୨୯ରେ ଏକ ବକ୍ତୃତାରେ କହିଥିଲେ, "ଆକ୍ରମଣର ଯୋଜନା ପ୍ରସ୍ତୁତ ହେଲାବେଳେ ମାକ୍‌ଆର୍ଥରେ ଏହିବର୍ଷ ଜୁଲାଇ ପୂର୍ବରୁ ଯୁଦ୍ଧ ଆରମ୍ଭ କରିଦେବା ପାଇଁ ବ୍ୟଗ୍ରତା ପ୍ରକାଶ କରୁଥିଲେ, କାରଣ ତାଙ୍କର ଧାରଣାଥିଲା, ଚୀନ କମ୍ୟୁନିଷ୍ଟମାନେ ଜୁଲାଇ ମାସରେ ଫର୍ମୋଜା ଅଭିଯାନ ଆରମ୍ଭ କରିବେ । X X X । ଜୁନ ୨୫ ସକାଳେ ସିଙ୍ଗ୍‌ମାନ୍‌ରୀ ମାକ୍‌ଆର୍ଥରଙ୍କ ଆଦେଶ ଅନୁସାରେ ଏହି ଗୃହଯୁଦ୍ଧ ଆରମ୍ଭ କରିଦେଲେ ।" ଉତ୍ତର କୋରିଆ ସରକାରଙ୍କ ବୈଦେଶିକ ମନ୍ତ୍ରୀ ନିଜ ବକ୍ତୃତାରେ ପ୍ରକାଶ କରିଛନ୍ତି, ୧୯୫୦ ମେ ମାସରେ ଉତ୍ତର କୋରିଆ ସରକାର ବିଶ୍ୱସ୍ତସୂତ୍ରରୁ ଖବର ପାଇଥିଲେ ଯେ ଜୁନର ମଧ୍ୟ ଭାଗରେ ଦକ୍ଷିଣ କୋରିଆ ଆକ୍ରମଣ ଆରମ୍ଭ କରିବ । ସେଥିପାଇଁ ଉତ୍ତରକୋରିଆ ସରକାର ଆଗରୁ ପ୍ରସ୍ତୁତ ହୋଇ ରହିଥିଲେ ।

ପ୍ରଚୁର ପ୍ରମାଣ ରହିଛି, ଆମେରିକାର ପ୍ରରୋଚନା ଓ ନିର୍ଦ୍ଦେଶରେ ଦକ୍ଷିଣ କୋରିଆ ସୈନ୍ୟ ଉତ୍ତରକୋରିଆ ଉପରେ ଆକ୍ରମଣ ଆରମ୍ଭ କଲେ । ସେମାନେ ଆଶା କରିଥିଲେ, 'ଆମେରିକାନ୍ ଛାଞ୍ଚରେ ଗଢ଼ା' ସୁସଜ୍ଜିତ ସୈନ୍ୟ ଅତି ସହଜରେ ଉତ୍ତର କୋରିଆକୁ ଦଖଲ କରିନେବେ । ସେମାନେ ଜାଣି ନଥିଲେ ୫ ବର୍ଷ ସ୍ୱାଧୀନତା ଉପଭୋଗ କରିଥିବା ଜନସେନାର ଶକ୍ତି କ'ଣ । ଯେଉଁମାନେ ଜନତାକୁ ପରାଧୀନ କରିବାକୁ ଚାହାନ୍ତି, ଜନତାକୁ ଶୋଷଣ କରିବା ଯେଉଁମାନଙ୍କର ଧର୍ମ, ସେମାନେ ସବୁବେଳେ ଜନତାକୁ ହୀନଚକ୍ଷୁରେ ଦେଖନ୍ତି, ଜନତାର ପ୍ରକୃତ ଶକ୍ତି କଳନା କରିପାରନ୍ତି ନାହିଁ । ଉତ୍ତର କୋରିଆର ଜନବାହିନୀ ଏକ ମହତ୍ ଆଦର୍ଶ, ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଲଢିଲାବେଳେ, ଦକ୍ଷିଣ କୋରିଆ ସରକାରର

ଭଡ଼ାଟିଆ ସୈନ୍ୟ, ବାହାରେ ବେକାର ହୋଇ ଭୋକ ଉପାସରେ ମରିବା ଅପେକ୍ଷା ସୈନ୍ୟ ହେବା ଭଲ ଭାବି ଯୁଦ୍ଧରେ ଯୋଗ ଦେଇଥିଲେ । ଜନବାହିନୀର ପ୍ରାଣମୂର୍ଚ୍ଛା ଲଢ଼େଇ ଆଗରେ ଭଡ଼ାଟିଆ ସୈନ୍ୟ ତିଷ୍ଠିବା କୌଣସିଠାରେ ଦେଖାଯାଉନାହିଁ । ଚୀନର ଗୃହଯୁଦ୍ଧରେ ମଧ୍ୟ ଚିଅଙ୍ଗ୍ କାଇସେକ୍‌ର ଆମେରିକାନ୍-ତାଲିମ୍ ସୈନ୍ୟ ଜନବାହିନୀ ଦ୍ୱାରା ସମ୍ପୂର୍ଣ୍ଣ ପରାସ୍ତ ହୋଇଥିଲେ । ଉତ୍ତର ଓ ଦକ୍ଷିଣକୋରିଆ ସୈନ୍ୟଙ୍କ ଭିତରେ କୌଣସି ସ୍ୱାର୍ଥସଂଘର୍ଷ ନଥିଲା । ଉଭୟେ କୃଷକଶ୍ରମିକ ଶ୍ରେଣୀରୁ ଜନ୍ମ, ଏବଂ ଉଭୟେ ଦକ୍ଷିଣକୋରିଆର ସବଣ ସଜୁତର ଶତ୍ରୁ । ତେଣୁ ଉତ୍ତରକୋରିଆ ସୈନ୍ୟଙ୍କର ପ୍ରବଳ ପ୍ରତିରୋଧ ଆଗରେ ଦକ୍ଷିଣକୋରିଆ ସୈନ୍ୟଙ୍କ ନୈତିକତା ଭାଙ୍ଗିପଡ଼ିଲା, ସେମାନେ ହଜାର ହଜାର ସଂଖ୍ୟାରେ ଆତ୍ମସମର୍ପଣ କଲେ, ସପ୍ତାହକ ପରେ ଦକ୍ଷିଣକୋରିଆ ସେନାର କୌଣସି ସଂଗଠିତ ସ୍ଥିତି ରହିଲା ନାହିଁ । ସେମାନେ ଧରିଥିବା ଆମେରିକାନ୍ ହାତହତିଆର ଉତ୍ତରକୋରିଆ ସୈନ୍ୟମାନଙ୍କର ହାତରେ ପଡ଼ିଲା । 'ନିଉୟର୍କ ଟାଇମ୍ସ' କାଗଜର ଜୁଲାଇ ୨୬ ସଂସ୍କରଣରେ ପ୍ରକାଶ ପାଇଛି, ଦକ୍ଷିଣ କୋରିଅନ୍-ମାନଙ୍କଠାରୁ ପ୍ରଚୁର ପରିମାଣରେ ଆମେରିକାନ୍ ଅସ୍ତ୍ର ଜବତ କରି ଉତ୍ତରକୋରିଆ ସୈନ୍ୟ ସେସବୁ ଆମେରିକାନ୍ ସୈନ୍ୟମାନଙ୍କ ବିରୁଦ୍ଧରେ ପ୍ରୟୋଗ କରୁଛନ୍ତି । ଯୁଦ୍ଧର ଗତି ଅନ୍ୟମାର୍ଗ ଧରିଲା, ତାହା ଉଦ୍ୟୋକ୍ତା-ମାନଙ୍କର କଳ୍ପନା ଅନୁରୂପ ହୋଇପାରିଲା ନାହିଁ । ଏହା ଆମେରିକାନ୍ ସାମ୍ରାଜ୍ୟବାଦ ବିରୋଧୀ ମୁକ୍ତି ସଂଗ୍ରାମର ରୂପ ନେଲା ।

ଆମେରିକାନ୍‌ମାନେ ମନେ କରିଥିଲେ ପ୍ରଭୁଦେଶ ଆମେରିକାର ଗୋରାସୈନ୍ୟଙ୍କ ନାଁ ଶୁଣିବା ମାତ୍ରେ ଉତ୍ତର କୋରିଆ ସୈନ୍ୟ ଛନିଆଁ ହୋଇ ପଳାଇଯିବେ । କିନ୍ତୁ ଠିକ୍ ତାର ବିପରୀତ

ଉଠିଲା । ଆମେରିକାର ଗୋରସୈନ୍ୟଙ୍କୁ ଛତ୍ରଭଙ୍ଗ ଦେଇ ପଳାଇବାକୁ ପଡ଼ିଲା । ଆମେରିକାର ସମରବାଦୀଙ୍କ ମନରେ ଚମକ ପଶିଲା । ଆମେରିକା ସୈନ୍ୟଙ୍କ ଅବସ୍ଥା ବର୍ଣ୍ଣନା କରି ଆମେରିକାର 'ଏସୋସିଏଟେଡ୍ ପ୍ରେସ୍'ର ସମ୍ବାଦଦାତା ଲେଖିଛନ୍ତି, "ପୂର୍ବେ ଏହିପରି ରୁଷଭିତରେ କୌଣସି ସୈନ୍ୟବାହିନୀର କୌଣସିଠାରେ ମୋହ ଭୁଟି ନଥିଲା । × × × ଯଦି ଗତ ଶତାବ୍ଦୀରେ ଅଦମ 'ଲାଲଭାରତୀୟ'ଙ୍କର ବିଦ୍ରୋହ ଦମନ କରିବାକୁ ଯାଇ ଆମେରିକାର ଅଶ୍ବବାହିନୀ ଅଧୁନାର ଟ୍ୟାଙ୍କବାହିନୀର ସମ୍ମୁଖୀନ ହୋଇଥାନ୍ତେ ତାହାହେଲେ ସେମାନେ ଯେପରି ବିସ୍ମିତ ଓ ବିବ୍ରତ ହୋଇପଡ଼ନ୍ତେ, ଠିକ୍ ସେହିପରି ଆମେରିକା ବାହିନୀ କୋରିଆରେ ବିବ୍ରତ ହୋଇପଡ଼ିଲେ ।" କାରଣ ସେମାନେ ଦେଖିଲେ, 'ଗୁକ୍' ମାନେ ପ୍ରାଣ ଶଙ୍କଳରେ ଦୌଡ଼ି ପଳାଇବା ପରିବର୍ତ୍ତେ ଗୋରସୈନ୍ୟଙ୍କୁ ଯୁଦ୍ଧଭୂମିରୁ ହଟାଇ ପାରୁଛନ୍ତି ।

କୋରିଅର ଗୃହଯୁଦ୍ଧ ବାସ୍ତବରେ ଉତ୍ତର ଓ ଦକ୍ଷିଣ କୋରିଆ ଭିତରେ ଯୁଦ୍ଧ ନୁହେଁ । ଏହା କେତେକ ସାମ୍ରାଜ୍ୟବାଦୀ ଦାଲାଲଙ୍କ ବିରୁଦ୍ଧରେ ସମଗ୍ର କୋରିଅବାସୀର ଯୁଦ୍ଧ । ତେଣୁ ଉତ୍ତର ଓ ଦକ୍ଷିଣ ଉଭୟ ଅଞ୍ଚଳରେ ସିଙ୍ଗମାନ୍‌ରି ସରକାର ବିରୁଦ୍ଧରେ ଯୁଦ୍ଧ ଚାଲିଲା, ଦକ୍ଷିଣରେ ଗରିଲା ଆକ୍ରମଣ ପ୍ରବଳ ହୋଇ ଉଠିଲା । ପ୍ରଥମ ସପ୍ତାହ ପରେ ଯେତେବେଳେ ଦକ୍ଷିଣ କୋରିଅ ସେନା ଅଦୃଶ୍ୟ ହୋଇଗଲେ, ଏହା ପୂରାପୂରି ଆମେରିକାନ୍ ବିରୋଧୀ ଯୁଦ୍ଧରେ ପରିଣତ ହେଲା । ଦକ୍ଷିଣ କୋରିଅ ବାହିନୀର ବହୁସୈନ୍ୟ ଆତ୍ମସମର୍ପଣ କରି ଜନବାହିନୀରେ ଯୋଗ ଦେଲେ, ଦକ୍ଷିଣକୋରିଅର ବହୁ ବ୍ୟବସ୍ଥାପକ ଉତ୍ତରକୋରିଅ ସରକାର ସହିତ ସହଯୋଗ କଲେ । କୋରିଅବାସୀଙ୍କ ଆଖିରେ ଦଶିଲା, କେବଳ କେତେକ

ଅମେରିକାନ୍ ଡଲାର ଏବଂ ଅମେରିକା ସାମ୍ରାଜ୍ୟବାଦୀ ସୈନ୍ୟ । ଯେତେବେଳେ 'ସମ୍ମିଳିତ ଗଣତାନ୍ତ୍ରିକ ପିତୃଭୂମିସାମ୍ମୁଖ୍ୟ' ଘୋଷଣା କଲା, ଦେଶଦ୍ରୋହୀ ସିଙ୍ଗମାନ୍ରୀ ଓ ତାର ସାଥିମାନଙ୍କୁ ଜନତାର ଅଦାଲତରେ ବିଚାର କରାଯିବ, ଏବଂ ଅମେରିକା ସୈନ୍ୟମାନଙ୍କୁ କୋରିଅରୁ ହଟିଯିବାକୁ ପଡ଼ିବ, ଏହି ଘୋଷଣା ପତ୍ରରେ ଅଗଷ୍ଟ ୨୭ ସୁଦ୍ଧା ୧୩,୩୧୯,୧୦୨ ବ୍ୟକ୍ତି ଦସ୍ତଖତ କରିଥିଲେ ଏବଂ ସେମାନେ ସମଗ୍ର କୋରିଅର ସାବାଳକ ସଂଖ୍ୟାର ଶତକରା ୯୮ । ଏହି ଘୋଷଣାପତ୍ରରେ ଦକ୍ଷିଣକୋରିଅର ୬୯, ୧୯,୭୬୧ ବ୍ୟକ୍ତି ସ୍ୱାକ୍ଷର କରିଥିଲେ ।

ଦକ୍ଷିଣକୋରିଅରେ ଜନବାହିନୀ ପ୍ରବେଶ କରିବା ଖବରପାଇ ଜନକମିଟି ସବୁ ପୁନର୍ବାର ମୁଣ୍ଡଟେକି ଉଠିଲେ । ଉତ୍ତରକୋରିଅରେ କାର୍ଯ୍ୟକାରୀ ହୋଇଥିବା କୃଷିସଂସ୍କାର ସମସ୍ତ ମୁକ୍ତ ଅଞ୍ଚଳରେ ଜାରି ହେଲା, ଏବଂ ଦକ୍ଷିଣ କୋରିଅର ଗ୍ରାମ ଗହଳରେ ସିଙ୍ଗମାନ୍ରୀ ସରକାରର ସ୍ଥିତି ରହିଲା ନାହିଁ । ମୁକ୍ତିଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଦକ୍ଷିଣକୋରିଅ ଜନତା ଅନନ୍ଦ ଓ ଅଗ୍ରହରେ ଅଗ୍ରସର ହେଲେ । କେବଳ ସେଓଲ ସହରରୁ ୩୦,୦୦୦ ଯୁବକ ଜନବାହିନୀରେ ଯୋଗ ଦେବାପାଇଁ ଅବେଦନ କରିଥିଲେ ।

କୋରିଅ ଯୁଦ୍ଧ ଯେ ଅମେରିକାନ୍ ବିଦ୍ୱେଷୀ ଯୁଦ୍ଧରେ ପରିଣତ ହେଲା, ଏହା ଅମେରିକା ସମ୍ବାଦପତ୍ରମାନଙ୍କରେ ମଧ୍ୟ ପ୍ରକାଶ ପାଇଛି । କୋରିଅ ଯୁଦ୍ଧସାମ୍ମୁଖ୍ୟରୁ 'ନିଉୟର୍କପୋଷ୍ଟ'ର ସମ୍ବାଦଦାତା ଲେଖିଛନ୍ତି, ଅମେରିକାନ୍ମାନେ ଦକ୍ଷିଣ କୋରିଅବାସୀଙ୍କ ଠାରୁ ସାହାଯ୍ୟ ଆଶା କରିବା ପରିବର୍ତ୍ତେ, ଶତ୍ରୁତା ଆଶଙ୍କା କରିବାପାଇଁ ଯଥେଷ୍ଟ କାରଣ ରହିଛି । ଯୁଦ୍ଧକ୍ଷେତ୍ରରୁ ଫେରିଅସିଥିବା ଲେଫ୍ଟନାଣ୍ଟ କର୍ଣ୍ଣେଲ ମାକ୍କ୍ଲୁର୍ ଅତି ଖୋଲା ଭାବରେ କହିଛନ୍ତି, "ଦକ୍ଷିଣ

କୋରିଅବାସୀ ଆମକୁ ଘୃଣାକରନ୍ତି ।" 'ନିଉଜ୍‌ଉଇକ୍‌' କାଗଜରେ ପ୍ରକାଶ ପାଇଛି, "ସାଧାରଣଙ୍କୁ ଜଣାପଡୁଛି, କୋରିଅଯୁଦ୍ଧ ଯେପରି କୋରିଅବାସୀଙ୍କର ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢେଇ ।" 'ଡ଼େଲିକଂପାସ୍' ସ୍ୱୀକାର କରନ୍ତି, "ସାମରିକ ଦୃଷ୍ଟିରୁ କହିବାକୁ ଗଲେ ଉତ୍ତରକୋରିଅ ବର୍ତ୍ତମାନ ସମଗ୍ର କୋରିଅରେ ପରିଣତ ହେଲଣି । କାରଣ ଏହା ଦେଶର ଯେ କୌଣସି ଭାଗରୁ ଜନଗଣ ସାହାଯ୍ୟ ସହଜରେ ପାଇ ପାରୁଛନ୍ତି ।"

କୋରିଅବାସୀଙ୍କୁ ମୁକ୍ତିଦେବା ଛଳନାରେ ଆମେରିକା ସୈନ୍ୟ କୋରିଅଦେଶକୁ ଜାଳିଦେଇ ଛାରଖାର କଲେଣି । ଆମେରିକାର ଉଡ଼ାଜାହାଜବାହିନୀ ଯୁଦ୍ଧର ପ୍ରଥମ ୩ ମାସ ଭିତରେ କୋରିଅର ପୁରପଲ୍ଲୀରେ ଯେତେ ବୋମା ଅଜାଡ଼ିଛନ୍ତି, ତାହା ଜର୍ମାନୀ ଗତଯୁଦ୍ଧର ୫ ବର୍ଷ ଭିତରେ ଶିଳ୍ପଗହଳ ଇଂଲଣ୍ଡ ଉପରେ ପକାଇନଥିଲା । କୋରିଅବାସୀଙ୍କୁ ଜବତ୍ କରି ନପାରିବାରୁ ଆମେରିକାନ୍ ସାମ୍ରାଜ୍ୟବାଦୀମାନେ କୋରିଅକୁ [illegible] ଧ୍ୱଂସ କରିବାରେ ଲାଗିଛନ୍ତି । କୋରିଅଦେଶକୁ ମଶାଣିରେ ପରିଣତ କରୁଛନ୍ତି । ସାଧାରଣ କୋରିଅବାସୀଙ୍କୁ ଆମେରିକାନ୍ ସାମ୍ରାଜ୍ୟ-ବାଦୀମାନେ ଅର୍ଦ୍ଧମନୁଷ୍ୟ ବୋଲି ଘୃଣା କରନ୍ତି, ତାଚ୍ଛଲ୍ୟରେ ସେମାନଙ୍କୁ 'ଗୁକ୍' ବୋଲି ଡାକନ୍ତି । ସେମାନେ ବାସହୀନ ପଳାତକମାନଙ୍କ ଉପରେ ଗୁଳି ଚଳାଇବାକୁ ସଙ୍କୋଚ ସୁଦ୍ଧା ବୋଧ କରନ୍ତି ନାହିଁ । କୋରିଅନ୍ ଯୁଦ୍ଧବନ୍ଦୀ ଆମେରିକାନ୍‌ମାନଙ୍କ ହାତରେ ଯେଉଁ ବ୍ୟବହାର ପାଉଛନ୍ତି, ତାହା ନାଜୀ ଜର୍ମାନୀର ବ୍ୟବହାରଠାରୁ ଅମାନୁଷିକତାରେ ବଳିପଡୁଛି । ଯେଉଁସବୁ ସ୍ଥାନ ଆମେରିକାନ୍‌ମାନେ ଛାଡ଼ିବାକୁ ବାଧ୍ୟ ହେଉଛନ୍ତି, ସେସବୁର ବାସିନ୍ଦାଙ୍କୁ ସେମାନଙ୍କର ସାଙ୍ଗ ଧରିବାକୁ ବାଧ୍ୟ କରୁଛନ୍ତି, ସେମାନେ

ନାମରେ ହେଲେ ନିର୍ମମଭାବରେ ସେମାନଙ୍କୁ ହତ୍ୟା କରାଯାଉଛି । କୋରିଆରେ ଆମେରିକା ସୈନ୍ୟଙ୍କର ବର୍ବର ଅତ୍ୟାଚାରର ଛବି ସଂଗ୍ରହ କରି ଉତ୍ତରକୋରିଆ ସରକାର ଏକ ସିନେମାଚିତ୍ର ପ୍ରସ୍ତୁତ କରିଛନ୍ତି । ତାହା ମିଳିତଜାତିସଂଘର ପରିଦର୍ଶନପାଇଁ ପଠାଯାଇଛି । କୋରିଆରେ ଆମେରିକା ସକଳତନ୍ତ୍ରକାର ଆନ୍ତର୍ଜାତିକ ବିଧାନକୁ ଅବମାନନା କରି ନିର୍ମମ ଅତ୍ୟାଚାର ଚଳାଇଛି । ଏହି ଅତ୍ୟାଚାରରେ ବିବ୍ରତ ହୋଇ ଆମେରିକାର ସଚିତ୍ର କାଗଜ 'ଲାଇଫ୍'ର ସମ୍ବାଦଦାତା ଲେଖିଛନ୍ତି, "ଏହି କାହାଣୀ ଯେପରି ଆଉ କେବେ ଜଣେ ଆମେରିକାନ୍‌ଙ୍କୁ ଲେଖିବାକୁ ନପଡ଼େ । ଏହା ଏକ ବର୍ବର ଯୁଦ୍ଧର ବର୍ବର କାହାଣୀ । ବୋଧହୁଏ ଆମେରିକା ଆଜିଯାଏ ଲଢ଼ିଥିବା ସମସ୍ତ ଯୁଦ୍ଧ ଭିତରେ ଏହା ସବୁଠୁଁ ବଳି ବର୍ବର ।"

---

# ଯୁଦ୍ଧ ନା, ଶାନ୍ତି ?

ଗଲା ମହାଯୁଦ୍ଧରେ ହିଟଲର୍ ଯାହା କରିପାରି ନଥିଲା, ଆମେରିକାର ଯୁଦ୍ଧବାଦୀମାନେ ତାହା କରିଦେଲେ । ସେମାନେ ମିଳିତ ଜାତିସଂଘର ଶାନ୍ତିପତାକା ହାତରେ ଧରି କୋରିଆରେ ଅଶାନ୍ତିର ନିଆଁ ଜାଳିବାକୁ ସମର୍ଥ ହେଲେ, ମିଳିତ ଜାତିସଂଘର ମିଳନପୀଠକୁ ଆମେରିକା ସରକାରର ଏକ ଅନୁଗତ ଅନୁଷ୍ଠାନରେ ପରିଣତ କଲେ ।

ଯୁଦ୍ଧଖବର ଆମେରିକାରେ ପହଞ୍ଚିବାର କୋଡ଼ିଏ ଘଣ୍ଟା ଭିତରେ ମିଳିତ ଜାତିସଂଘର ନିରାପତ୍ତା ପରିଷଦ ଉତ୍ତର କୋରିଆକୁ

ଆକ୍ରମଣକାରୀ ବୋଲି ଘୋଷଣା କଲା । ଯୁଦ୍ଧର ସଠିକ ବିବରଣୀ ନିରାପତ୍ତା ପରିଷଦ ପାଇ ନଥିଲା । କେବଳ କୋରିଆ କମିଶନ୍‌ର ଏକ ଅସ୍ପଷ୍ଟ ଓ ସଂକ୍ଷେପ ବାର୍ତ୍ତା ନିରାପତ୍ତା ପରିଷଦରେ ପହଞ୍ଚିଥିଲା । ସେଥିରେ ଲେଖାଥିଲା, ସିଙ୍ଗ୍‌ମାନ୍‌ରୀ-ସରକାରଠାରୁ କମିଶନ୍ ଖବର ପାଇଛନ୍ତି ଯେ ଉତ୍ତର କୋରିଆ ଆକ୍ରମଣ ଆରମ୍ଭ କରିଛନ୍ତି ଏବଂ ଯୁଦ୍ଧ ବଡ଼ ଆକାର ଧାରଣ କରିବା ବିପଦ ଦେଖୁଛନ୍ତି । ମଧ୍ୟସ୍ଥତା ଦ୍ୱାରା ଶାନ୍ତିସ୍ଥାପନ କରିବାପାଇଁ ସୂଚନା ଦେଇ, ପରେ ବିଶେଷ ବିବରଣୀ ଏବଂ ସୁଚିନ୍ତିତ ସୁପାରିଶ ପଠାଇବା ପାଇଁ କମିଶନ୍ ପ୍ରତିଶ୍ରୁତି ଦେଇଥିଲା । କମିଶନ୍‌ର ମଧ୍ୟସ୍ଥତା ସୂଚନାକୁ ଗ୍ରହଣ ନକରି, ଏବଂ ସବିଶେଷ ବିବରଣୀ କିମ୍ବା ସୁପାରିଶକୁ ଅପେକ୍ଷା ନକରି ଅତି ତରତରରେ ନିରାପତ୍ତା ପରିଷଦ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିରେ ପହଞ୍ଚିଗଲା । ଏହା ପୂର୍ବରୁ କାଶ୍ମୀର, ଇଣ୍ଡୋନେସିଆ, ପାଲେଷ୍ଟାଇନ ପ୍ରଭୃତି ଅଞ୍ଚଳରେ ଆକ୍ରମଣ ହୋଇଥିବା ଅଭିଯୋଗ ନିରାପତ୍ତା ପରିଷଦ ଆଗରେ ଉପସ୍ଥାପିତ ହୋଇଥିଲା, କିନ୍ତୁ କୌଣସି ଘଟଣାରେ ଉଭୟପକ୍ଷକୁ ନଶୁଣି ସବିଶେଷ ତଥ୍ୟ ସଂଗ୍ରହ ନକରି, ମିଳାମିଶାର ଉଦ୍ୟମ ନକରି ନିରାପତ୍ତା ପରିଷଦ ଏପରି ଏକ ନିଷ୍ପତ୍ତି ଗ୍ରହଣ କରିନଥିଲା । ଯେତେବେଳେ ଉତ୍ତର କୋରିଆ ଓ ଦକ୍ଷିଣକୋରିଆ ଉଭୟେ ପରସ୍ପରକୁ ଆକ୍ରମଣକାରୀ ବୋଲି ନିନ୍ଦା କରୁଥିଲେ, ସେତେବେଳେ ନିରାପତ୍ତା ପରିଷଦ ଉଭୟ ପକ୍ଷକୁ ନ ଶୁଣି, ପ୍ରକୃତ ତଥ୍ୟ ଅନୁସନ୍ଧାନ ନ କରି ଏକ ପକ୍ଷକୁ ଦୋଷୀ ସାବ୍ୟସ୍ତ କରିବା ସାଧାରଣ ଆଇନଦୃଷ୍ଟିରୁ ମଧ୍ୟ ମାରାତ୍ମକ ଭୁଲ । ଏକ ଶାନ୍ତିରକ୍ଷାକାରୀ ଆନ୍ତର୍ଜାତିକ ଅନୁଷ୍ଠାନ ଏପରି ଏକତରଫା ଅନ୍ୟାୟ ସିଦ୍ଧାନ୍ତରେ ପହଞ୍ଚିବା ଅର୍ଥ ନିଜର ପ୍ରକୃତ ଭୂମିକା ହରାଇ ଯୁଦ୍ଧଖୋରଙ୍କ ହାତଅସ୍ତ୍ର ହୋଇଯିବା ଛଡ଼ା ଅନ୍ୟ କିଛି ନୁହେଁ ।

ଯେଉଁ ଅନ୍ୟାନ୍ୟ ନିଷ୍ପତ୍ତି ନିରାପତ୍ତା ପରିଷଦ ଗ୍ରହଣ କଲା, ତାହା ମିଳିତଜାତିସଂଘର ମୂଳନୀତିକୁ କୁଠାରାଘାତ କରୁଛି । ମିଳିତ ଜାତିସଂଘର ବିଧାନରେ ଅଛି, କୌଣସି ଦେଶ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନେବା ପୂର୍ବରୁ ନିରାପତ୍ତା ପରିଷଦର ପାଞ୍ଚଜଣ ସ୍ଥାୟୀ ସଭ୍ୟଙ୍କର (ଆମେରିକା, ରୁଷ, ବ୍ରିଟେନ, ଫ୍ରାନ୍ସ ଓ ଚୀନର) ସ୍ୱୀକୃତି ଦରକାର । ତାହା ନ ହୋଇପାରିଲେ ପ୍ରସ୍ତାବ ନାକଚ ହୋଇଯିବ । ଏହାର କାରଣ, ଏହି ପାଞ୍ଚଟି ଶକ୍ତି ଭିତରୁ ଯଦି ଜଣେ ମଧ୍ୟ ବିରୋଧ କରନ୍ତି, କାର୍ଯ୍ୟାନୁଷ୍ଠାନ କେବଳ ବିବାଦକୁ ବଢ଼ାଇବ, ଶାନ୍ତିସ୍ଥାପନ କରିବ ନାହିଁ । ମିଳିତଜାତିସଂଘ ଶାନ୍ତିସ୍ଥାପନ ଉଦ୍ଦେଶ୍ୟରେ ଗଢ଼ା, ତାହାର ଲକ୍ଷ୍ୟ ସଂଘର୍ଷ ବଢ଼ାଇବା ନୁହେଁ । ଏହି ପ୍ରଧାନ ପାଞ୍ଚଟି ଶକ୍ତି ଯଦି ମିଳାମିଶାର ଚେଷ୍ଟା କରନ୍ତି, ଦୁନିଆରେ ଶାନ୍ତିଭଙ୍ଗର ଆଶଙ୍କା ରହିବ ନାହିଁ । ମିଳାମିଶାର ନୀତି ଛାଡ଼ିଦେଲେ ଜାତିସଂଘର ମୂଳପୀଠ ଭାଙ୍ଗିପଡ଼ିବ, ଏହାର ଲକ୍ଷ୍ୟଭ୍ରଷ୍ଟ ହେବ । ଜାତିସଂଘର ମୂଳଭିତ୍ତି ହେଉଛି ପଞ୍ଚଶକ୍ତିର ସହଯୋଗ । ଦୁନିଆର ବାସ୍ତବ ଅବସ୍ଥା ଦୃଷ୍ଟିରୁ ଏହି ପଞ୍ଚଶକ୍ତିର ସହଯୋଗ ହେଉଛି ଶାନ୍ତିରକ୍ଷା ପାଇଁ ପ୍ରଧାନ ଆବଶ୍ୟକତା । ଦୁନିଆ ଆଜି ଦୁଇଭାଗରେ ବିଭକ୍ତ—ଏକଅଂଶ ପୁଞ୍ଜିବାଦୀ ଦୁନିଆ, ଅନ୍ୟଟି ସାମ୍ୟବାଦୀ ଦୁନିଆ । ପୃଥିବୀର ଶାନ୍ତିପାଇଁ ଏହି ଦୁଇଅଂଶ ଭିତରେ ସାଧାରଣ ସହଯୋଗ ଦରକାର । ଏକ ଅଂଶ ଅନ୍ୟ ଏକ ଅଂଶକୁ ଜବରଦସ୍ତ ବଦଳାଇବା ପାଇଁ ଉଦ୍ୟମ କଲେ ଶାନ୍ତିଭଙ୍ଗ ହେବ, ପୃଥିବୀରେ ମହାଯୁଦ୍ଧ ଲାଗିଯିବ । ଠିକ୍ ସେହିପରି ପ୍ରତ୍ୟେକ ଦେଶ ତାର ଆଭ୍ୟନ୍ତରୀଣ ସମସ୍ୟା ସମାଧାନ କରିବାପାଇଁ ସ୍ୱାଧୀନ ଏହା ସ୍ୱୀକାର ନକଲେ ଏବଂ ଅନ୍ୟଦେଶ ମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କଲେ, ଏହା ମଧ୍ୟ ପୃଥିବୀ ମହାଯୁଦ୍ଧ ପାଇଁ ଇନ୍ଧନ ଯୋଗାଇବ । ସାମ୍ରାଜ୍ୟବାଦୀ

ଦେଶମାନଙ୍କ ଭିତରେ ମଧ୍ୟ ସ୍ୱାର୍ଥସଂଘର୍ଷ ରହିଛି, ଏବଂ ସେମାନଙ୍କ ଭିତରୁ ଏକଦଳ ସାମ୍ରାଜ୍ୟବାଦୀ ଶକ୍ତି ଅନ୍ୟ ଏକ ଦଳକୁ ଉଚ୍ଛେଦ କରିବାପାଇଁ ଯଦି ମିଳିତଜାତିସଂଘକୁ ବ୍ୟବହାର କରନ୍ତି, ତାହା ହେଲେ ମିଳିତଜାତିସଂଘ ଶାନ୍ତିରକ୍ଷକ ନହୋଇ ଯୁଦ୍ଧକାରୀ ଅନୁଷ୍ଠାନ ହୋଇଯିବ । ମିଳିତଜାତିସଂଘର ପ୍ରତିଷ୍ଠାତାମାନେ ଏହି ବାସ୍ତବ ସତ୍ୟକୁ ଉପଲବ୍ଧି କରି ତାହାର ବିଧାନରେ ଏହି ପଞ୍ଚଶକ୍ତି ସହଯୋଗକୁ ମୂଳନୀତି ଭାବରେ ଗ୍ରହଣ କରିଛନ୍ତି ।

କିନ୍ତୁ କୋରିଆ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲାବେଳେ ନିରାପତ୍ତା ପରିଷଦ ନିଜର ବିଧାନକୁ ଅବମାନନା କରିଛି । ସୋଭିଏଟ୍ ରୁଷ ଅନୁପସ୍ଥିତ ହେଉଥିବା ଅବସ୍ଥାରେ, ଏବଂ ଅନ୍ୟ ଏକ ସ୍ଥାୟୀ ସଭ୍ୟ ଚୀନ ସରକାରଙ୍କୁ ଉପସ୍ଥିତ ହେବାପାଇଁ ସୁଯୋଗ ଦିଆଯାଇ ନଥିବା ପରିସ୍ଥିତିରେ, ନିରାପତ୍ତା ପରିଷଦ ଉତ୍ତରକୋରିଆ ବିରୁଦ୍ଧରେ ନିଷ୍ପତ୍ତି ଗ୍ରହଣ କଲା । ପୃଥିବୀର ବହୁ ଆଇନଜ୍ଞଙ୍କ ମତରେ ଏହା ଏକାବେଳକେ ଅବୈଧାନିକ ନିଷ୍ପତ୍ତି । 'ପୃଥିବୀ—ଗଣତାନ୍ତ୍ରିକ ଔକଲସଂଘ' ମଧ୍ୟ ଏହି ନିଷ୍ପତ୍ତି ବିରୁଦ୍ଧରେ ନିଜର ସୁଚିନ୍ତିତ ମତ ପ୍ରକାଶ କରିଛି ।

ଉତ୍ତରକୋରିଆ ବିରୁଦ୍ଧରେ ନିରାପତ୍ତା ପରିଷଦ କୌଣସି ଶାସ୍ତିବିଧାନ କରିବା ପୂର୍ବରୁ ସଭାପତି ଟ୍ରୁମାନ୍ କୋରିଆ ଯୁଦ୍ଧରେ ଆମେରିକା ସୈନ୍ୟ ଯୋଗଦେବାପାଇଁ ହୁକୁମ ଦେଇଥିଲେ । କୋରିଆର ଗୃହଯୁଦ୍ଧରେ ଅନ୍ୟ ଏକଦେଶର ହସ୍ତକ୍ଷେପ ଆକ୍ରମଣକାରୀର କାର୍ଯ୍ୟ ହେଲେ ମଧ୍ୟ ନିରାପତ୍ତା ପରିଷଦ ସେଥିପ୍ରତି ନଜର ନଦେଇ ଉତ୍ତରକୋରିଆ ବିରୁଦ୍ଧରେ ଶାସ୍ତିବିଧାନ କଲା । ଏହା ଦ୍ୱାରା ନିରାପତ୍ତା ପରିଷଦ ଆମେରିକାର ଆକ୍ରମଣକାରୀ ଅଭିଯାନକୁ ନୈତିକ ସମର୍ଥନ ଯୋଗାଇଲା ।

କୋରିଆଯୁଦ୍ଧରେ ସବୁଠୁଁ ବଡ ଦୁର୍ଘଟଣା ହେଉଛି, ମିଳିତଜାତିସଂଘର ପତନ । ଜାତିସଂଘର କୋରିଆ ନିଷ୍ପତ୍ତିରେ ନ୍ୟାୟ ବିଚାରର ଗନ୍ଧ ସୁଦ୍ଧା ରହିଲା ନାହିଁ, ଅଧିକନ୍ତୁ ସ୍ୱୀକୃତ ବହୁ ଆନ୍ତର୍ଜାତିକ ସିଦ୍ଧାନ୍ତର ମଧ୍ୟ ଅବମାନନା କରାଗଲା । ୧୯ ସାଲର 'ଜେନେଭା ନିର୍ଦ୍ଧାରଣ' 'ଆକ୍ରମଣକାରୀ'ର ସଂଜ୍ଞା ନିରୂପଣ କରିଛି । ରୁଷିଆ, ଆମେରିକା, ବ୍ରିଟେନ ଆଦି ପ୍ରଧାନ ଦେଶମାନେ ଏହି ସଂଜ୍ଞାକୁ ଗ୍ରହଣ କରିଛନ୍ତି । ଏହି 'ଜେନେଭା ନିର୍ଦ୍ଧାରଣ'ରେ ସ୍ପଷ୍ଟଭାବରେ ଉଲ୍ଲେଖ ହୋଇଛି, "କୌଣସି ଦେଶର ଆଭ୍ୟନ୍ତରୀଣ ଅବସ୍ଥା ଆକ୍ରମଣପାଇଁ ଆଦୌ କାରଣ ହୋଇପାରିବ ନାହିଁ; ଯଥା—(କ) କୌଣସିଦେଶର ରାଜନୈତିକ, ଅର୍ଥନୈତିକ କିମ୍ବା ସାଂସ୍କୃତିକ ଅନୁନ୍ନତ ଅବସ୍ଥା; (ଖ) କୁଶାସନର ଅଭିଯୋଗ; (ଗ) ବିଦେଶୀ ବାସିନ୍ଦାଙ୍କ ଧନଜୀବନ ଉପରେ ବିପଦର ସମ୍ଭାବନା; (ଘ) ବିପ୍ଳବୀ କିମ୍ବା ପ୍ରତିବିପ୍ଳବୀ ଆନ୍ଦୋଳନ, ଗୃହଯୁଦ୍ଧ, ଅରାଜକତା କିମ୍ବା ଧର୍ମଘଟ (ଙ) ଦେଶଭିତରେ କୌଣସି ଏକ ରାଜନୈତିକ ବା ଅର୍ଥନୈତିକ ସଂସ୍ଥାର ସ୍ଥାପନ କିମ୍ବା ପ୍ରଚଳନ ।" ଉପରୋକ୍ତ ବିଷୟମାନ ପ୍ରତ୍ୟେକ ଦେଶର ଆଭ୍ୟନ୍ତରୀଣ ସମସ୍ୟା ଏବଂ ଏଥିରେ ହସ୍ତକ୍ଷେପ କରିବା 'ଜେନେଭା ନିର୍ଦ୍ଧାରଣ' ଅନୁସାରେ ଅନ୍ୟାୟ । ମିଳିତଜାତିସଂଘର ବିଧାନ ମଧ୍ୟ କୌଣସି ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପକୁ ପ୍ରଶ୍ରୟ ଦେଉନାହିଁ ।

ତେଣୁ କମ୍ୟୁନିଜମ୍‌କୁ ଦମନ କରିବା ବାହାନାରେ ଦୁଇଦଳ କୋରିଆନ୍‌ଙ୍କ ଗୃହଯୁଦ୍ଧରେ ହସ୍ତକ୍ଷେପ ମୂଳରୁ ଆକ୍ରମଣ-କାରୀର କାର୍ଯ୍ୟ । ଆମେରିକାର 'ଟ୍ରୁମାନ ନୀତି,' ପ୍ରତ୍ୟେକ ଦେଶର ଆଭ୍ୟନ୍ତରୀଣ ସମସ୍ୟାରେ ହସ୍ତକ୍ଷେପ କରିବା ଅଧିକାର ଦାବୀ କରୁଛି । ପୃଥିବୀର ପ୍ରତ୍ୟେକ ଦେଶରେ କି ଧରଣର ରାଜନୈତିକ,

ଅର୍ଥନୈତିକ ସଂସ୍ଥା ସ୍ଥାପନ ହେବା ଉଚିତ, ଏହା ଅନେକବାର ଶାସକମାନେ ସ୍ଥିର କରିବାକୁ ବସିଛନ୍ତି । ଏହା ଫଳରେ ଗ୍ରୀସର ଗୃହଯୁଦ୍ଧରେ ଆମେରିକା ହସ୍ତକ୍ଷେପକରି ତାର ସ୍ୱାଧୀନତା ଅପହରଣ କରିଛି, ଭିଏତ୍‌ନାମର ସ୍ୱାଧୀନତା ସଂଗ୍ରାମକୁ ଦଳି ଦେବାପାଇଁ ଆମେରିକା ଫରାସୀ ସାମ୍ରାଜ୍ୟବାଦୀଙ୍କୁ ସାମରିକ ସାହାଯ୍ୟ ଦେଉଛି, ଗଣତାନ୍ତ୍ରିକ ଚୀନକୁ ବାସନ୍ଦ କରି ରଖିଛି । ଏହି ନୀତିଯୋଗୁଁ ମିଳିତଜାତିସଂଘ ତା'ର ଶାନ୍ତି ସ୍ଥାପନ ଭୂମିକା ହରାଇବସିଛି, ଏବଂ ପୃଥିବୀ ଅନ୍ୟ ଏକ ମହାଯୁଦ୍ଧ ଆଡକୁ ଗତି କରୁଛି ।

ଇତିହାସରୁ ଜଣାଯାଏ, ଗୃହବିବାଦରେ ହସ୍ତକ୍ଷେପ ଆକ୍ରମଣର ଅନ୍ୟ ଏକ ରୂପ । ଅତୀତରେ ଯେଉଁସବୁ ରାଷ୍ଟ୍ର ଅନ୍ୟ ଦେଶର ଆଭ୍ୟନ୍ତରୀଣ ନୀତିରେ ହସ୍ତକ୍ଷେପ କରିଛନ୍ତି, ସେମାନେ ସେସବୁ ଦେଶର ସ୍ୱାଧୀନତା ଅପହରଣ କରିବାକୁ ମଧ୍ୟ ଉଦ୍ୟମ କରିଛନ୍ତି । ଅନ୍ୟର ଗୃହଯୁଦ୍ଧରେ ହସ୍ତକ୍ଷେପ ପୂରାପୂରି ଗଣତନ୍ତ୍ର ବିରୋଧୀ କାର୍ଯ୍ୟ । ଏହାଦ୍ୱାରା ଅନ୍ୟ ଏକ ଦେଶର ଆତ୍ମନିୟନ୍ତ୍ରଣ ଅଧିକାରକୁ ଅସ୍ୱୀକାର କରାଯାଉଛି ଏବଂ ସେହି ଦେଶ ଉପରେ ବିଦେଶୀ କର୍ତ୍ତୃତ୍ୱ ଜାରି କରିବାପାଇଁ ସୁଯୋଗ ସୃଷ୍ଟି କରାହେଉଛି । ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କଲେ ଶାନ୍ତିସ୍ଥାପନ ଆଦୌ ସମ୍ଭବ ନୁହେଁ । ଯେଉଁ ଦେଶର ଆଭ୍ୟନ୍ତରୀଣ ସମସ୍ୟାରେ ହସ୍ତକ୍ଷେପ କରାଯିବ, ସେଠାରେ ପ୍ରତିସଂଘର୍ଷ ବରାବର ଲାଗିରହିବ । ଏହା ଛଡ଼ା ଅନ୍ୟ ରାଷ୍ଟ୍ରମାନଙ୍କ ମନରେ ଆତଙ୍କ ଓ ଅବିଶ୍ୱାସ ଜନ୍ମେ, ଅନ୍ତର୍ଜାତିକ ସମ୍ପର୍କ ତିକ୍ତରୁ ତିକ୍ତତର ହେବ । ଏହି କାରଣରୁ ଆଭ୍ୟନ୍ତରୀଣ ନୀତିରେ ହସ୍ତକ୍ଷେପ ସବୁକାଳେ ଅନ୍ୟାୟ ଓ ବିପଜ୍ଜନକ ବୋଲି ବିବେଚିତ ହୋଇ ଆସିଛି ।

ଗତ ଶତାବ୍ଦୀରେ ଉତ୍ତର ଓ ଦକ୍ଷିଣ ଯୁକ୍ତରାଷ୍ଟ୍ର ଭିତରେ ଲଢ଼େଇ ଚାଲିଥିଲା । ଦକ୍ଷିଣର ଶାସକମାନେ ଉତ୍ତର ରାଜ୍ୟଗୋଷ୍ଠୀ

(ଷ୍ଟେଟ) ମାନଙ୍କ ଉପରେ ଚଢ଼ାଉ କଲେ । ଉତ୍ତରର ଶାସକମାନେ ଦକ୍ଷିଣର ବୀତଦାସମାଲିକଙ୍କର ଆକ୍ରମଣକୁ ପ୍ରତିହତ କରି କ୍ଷାନ୍ତ ହେଲେ ନାହିଁ । ସେମାନେ ଦକ୍ଷିଣଅଞ୍ଚଳକୁ ଅଭିଯାନ କରି ସେଠାର ପ୍ରତିକ୍ରିୟାଶୀଳ ଶାସକଗୋଷ୍ଠୀକୁ ସମ୍ପୂର୍ଣ୍ଣଭାବରେ ପରାସ୍ତ କରି ସମଗ୍ର ଦେଶପାଇଁ ଏକ ସମ୍ମିଳିତ ଶାସନ ଗଢ଼ିପାରିଲେ । ଏହି ଗୃହଯୁଦ୍ଧ ଯୁକ୍ତରାଷ୍ଟ୍ରର ଇତିହାସରେ ଏକ ଗୌରବମୟ ଅଧ୍ୟାୟ ଅଧିକାର କରି ପାରିଛି । ମେକ୍ସିକୋ ଦେଶର ୧୮୬୨-୬୭ ଗୃହଯୁଦ୍ଧରେ ଫରାସୀ ସରକାର ହସ୍ତକ୍ଷେପ କରିଥିଲେ । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକା ଏହାର ପ୍ରତିବାଦ କରି ମେକ୍ସିକୋରୁ ବିଦେଶୀ ସୈନ୍ୟ ଉଠାଇନେବାକୁ ଦାବୀ କରିଥିଲା । ସେବେର ଆମେରିକା ସରକାର ମେକ୍ସିକୋର ଗୃହଯୁଦ୍ଧକୁ 'ମେକ୍ସିକୋ ଜନତାର ଅପରିହାର୍ଯ୍ୟ ଅଧିକାର' ବୋଲି ପ୍ରତିପାଦିତ କରିଥିଲେ । ଚୀନରେ ଉତ୍ତର କମ୍ୟୁନିଷ୍ଟଶାସନ ସହିତ ଚ୍ୟାଙ୍ଗ୍ ସରକାରର ଲଢ଼େଇ ଚାଲିଥିଲା । ଚୀନର ଏହି ଯୁଦ୍ଧକୁ ଇଂଲଣ୍ଡ, ଆମେରିକା, ରୁଷ ସମସ୍ତେ ଗୃହଯୁଦ୍ଧ ବୋଲି ସ୍ୱୀକାର କରି ସେଥିରେ ହସ୍ତକ୍ଷେପ ନ କରିବାପାଇଁ ପ୍ରକାଶ୍ୟ ଘୋଷଣା କରିଥିଲେ । କୋରିଆର ଗୃହଯୁଦ୍ଧରେ ହସ୍ତକ୍ଷେପ କରିବା ପାଇଁ କୌଣସି ନୀତି କିମ୍ବା ଯୁକ୍ତି ନାହିଁ । କେବଳ ଦୁନିଆର ସର୍ବେସର୍ବା ହେବାପାଇଁ ଆମେରିକାର ହିଟଲରୀ ଦାବୀ କୋରିଆ ଗୃହଯୁଦ୍ଧରେ ହସ୍ତକ୍ଷେପର କାରଣ ହୋଇଛି ।

ମେକ୍ସିକୋ ଜନତାର ଯେଉଁ 'ଅପରିହାର୍ଯ୍ୟ ଅଧିକାର' ଆମେରିକା ସରକାର ସ୍ୱୀକାର କରିଥିଲା, ସେହି 'ଅପରିହାର୍ଯ୍ୟ ଅଧିକାର' ପ୍ରୟୋଗ କରି ବିଲାତ, ଆମେରିକା, ଫ୍ରାନ୍ସ, ରୁଷ ଆଦି ଦେଶର ଜନତା ନିଜ ନିଜ ଦେଶରେ ଗୃହଯୁଦ୍ଧ, ବିପ୍ଳବ କରି ପ୍ରଗତିଶୀଳ ସମାଜ ଓ ସରକାର ଗଢ଼ିଛନ୍ତି । ଯେଉଁ କାରଣ

ଅମେରିକା ଅନ୍ୟ ପ୍ରତ୍ୟେକ ଦେଶର ଗୃହବିବାଦରେ ହସ୍ତକ୍ଷେପ କରିବାକୁ ଉଦ୍ୟମ କରୁଛି, ଏହିସବୁ ବିପ୍ଳବରେ ଠିକ୍ ସେହିଧରଣର କାରଣ ଦେଖାଇ ପ୍ରଗତିବିରୋଧୀ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଓ ସରକାରମାନେ ବାହାରୁ ହସ୍ତକ୍ଷେପ କରିବାକୁ ଉଦ୍ୟମ କରିଥିଲେ । ସେତେବେଳେ କୌଣସି ଅନ୍ତର୍ଜାତିକ ଅନୁଷ୍ଠାନ ନଥିବାରୁ ପ୍ରତିକ୍ରିୟାଶୀଳ ଶକ୍ତିମାନେ ଅସ୍ଥାୟୀ ମେଣ୍ଟବାନ୍ଧି ହସ୍ତକ୍ଷେପର ପ୍ରୟାସ କରୁଥିଲେ । କିନ୍ତୁ ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକା ମିଳିତଜାତିସଂଘକୁ ଏହି ପ୍ରତିକ୍ରିୟାଶୀଳ ଅଭିଯାନରେ ପ୍ରୟୋଗ କରିବାକୁ ଉଦ୍ୟମ କରୁଛି । ଲାଟିନ୍ ଆମେରିକାର ୨୦ଟି ଦେଶ, ଏବଂ ଅନ୍ୟ ଯେଉଁସବୁ ଦେଶର ଆମେରିକା ସାହୁକାର ହୋଇପାରିଛି, ସେ ସମସ୍ତେ ଆମେରିକାର ଆଜ୍ଞା ଅବଜ୍ଞା କରିନପାରି ମିଳିତ ଜାତିସଂଘରେ ଆମେରିକାନୀତିକୁ ସମର୍ଥନ କରୁଛନ୍ତି । ତେଣୁ ସହଜରେ ମିଳିତ ଜାତିସଂଘ ଆମେରିକାର ହାତବାରିସୀ ହୋଇଯାଉଛି ।

କୋରିଆରେ ଆମେରିକା ସୈନ୍ୟ ଖଟାଇଛି, ସମଗ୍ର କୋରିଆରେ ଆର୍ଥନୈତିକ ଆଧିପତ୍ୟ ବିସ୍ତାର କରିବାର ବାସନା ପୋଷଣ କରୁଛି । ଏହା ସିଙ୍ଗମାନଙ୍କ ସରକାର ସହିତ ହୋଇଥିବା ଚୁକ୍ତିମାନଙ୍କରୁ ସ୍ପଷ୍ଟ ଜଣାପଡୁଛି (ଚତୁର୍ଥ ପରିଚ୍ଛେଦ ଦ୍ରଷ୍ଟବ୍ୟ) । ଆମେରିକାର ଶାସନକଳକୁ ଯେଉଁ ଧନକୁବେରମାନେ ନିଜ ହାତରେ ଧରିଛନ୍ତି, ସେହି ମର୍ଗାନ୍, ଡୁପଁ, ରକ୍‌ଫେଲର୍ ପ୍ରଭୃତି ଶିଳ୍ପପତିମାନେ ବର୍ତ୍ତମାନ ଯୁଦ୍ଧସରଞ୍ଜାମ ଉତ୍ପାଦନରେ ଲାଗିଛନ୍ତି । ଯୁଦ୍ଧକାଳୀନ ବାୟୁମଣ୍ଡଳ ସୃଷ୍ଟି କରିବାରେ ଏମାନଙ୍କର ସ୍ୱାର୍ଥ ରହିଛି । ଏହି ଶିଳ୍ପପତିମାନଙ୍କର ମୁଖପତ୍ର 'ୱାଲ୍ ଷ୍ଟ୍ରିଟ୍ ଜର୍ନାଲ୍'ର ହିସାବ ଅନୁସାରେ କୋରିଆଯୁଦ୍ଧ ହେବାରୁ ବିକ୍ରୀ ବଢ଼ିଛି, ଏବଂ ବିକ୍ରୀ ଅନୁପାତରେ ଲାଭ ୩ ଗୁଣ ବଢ଼ିଛି । ୧୯୪୯ରେ ଯେଉଁ ଉତ୍ପାଦନ

[illegible] ଥିଲା,

ତାହା ଦୂର ହୋଇଛନ୍ତି । ଆମେରିକାର ଶାସକଶ୍ରେଣୀ ପକ୍ଷରେ ଯୁଦ୍ଧ ଲୋଭପ୍ରଦ ହୋଇଛନ୍ତି ।

କୋରିଆ ଯୁଦ୍ଧର ଅନ୍ତର୍ଜାତିକ ତାତ୍ପର୍ଯ୍ୟ ରହିଛି । କୋରିଆ ଯୁଦ୍ଧରେ ଆମେରିକାର କୋରିଆ କେବଳ ଲକ୍ଷ୍ୟ ନୁହେଁ, ଏହା ଅପେକ୍ଷା ବଡ଼ ଶିକାରକୁ ଶତ୍ରୁମାନେ ଜଣାପଡ଼ୁଛନ୍ତି । କୋରିଆ ଗୃହଯୁଦ୍ଧରେ ହସ୍ତକ୍ଷେପ କରିବା ସଙ୍ଗେ ସଙ୍ଗେ ଆମେରିକା ତା'ର ସାମ୍ରାଜ୍ୟବାଦୀ ହାତ ଫର୍ମୋଜା ଦ୍ୱୀପ ଉପରକୁ ବଢ଼ାଇଛି । ଜୁନ ୨୭ ତାରିଖର ଘୋଷଣାରେ ସଭାପତି ଟ୍ରୁମାନ୍ ଅମେରିକାର ସପ୍ତମ ନୌବାହିନୀକୁ ଫର୍ମୋଜା ଦ୍ୱୀପ ଅବରୋଧ କରିବାକୁ ହୁକୁମ ଦେଇଛନ୍ତି । ସେ ପରିଷ୍କାରଭାବରେ ଘୋଷଣା କରିଛନ୍ତି ଯେ ଚୀନର ଗଣତାନ୍ତ୍ରିକ ସରକାର ଫର୍ମୋଜା ଦ୍ୱୀପ ଦଖଲ କରିବାକୁ ଉଦ୍ୟମ କଲେ ଅମେରିକାବାହିନୀ ବାଧାଦେବ । ଅର୍ଥାତ୍, ଫର୍ମୋଜା ଦ୍ୱୀପରେ ପଳାତକ ଚ୍ୟାଙ୍ଗ୍‌କାଇଶେକ୍ ଅବାଧରେ ଅମେରିକା ସାହାଯ୍ୟରେ ଚୀନର ପୁନର୍ଦଖଲ ପାଇଁ ସଜବାଜ ହୋଇପାରିବ । ଏହି ଘୋଷଣା ପରେ ଅମେରିକା ସେନାପତି ମାକଆର୍ଥର ଫର୍ମୋଜା ଦ୍ୱୀପକୁ ଯାଇ ଚ୍ୟାଙ୍ଗ୍ ସହିତ ସାମରିକ ଆଲୋଚନା ଚଳାଇଥିଲେ । ତାପରେ ଅମେରିକାର ଅସ୍ତ୍ରଶସ୍ତ୍ର ଫର୍ମୋଜାରେ ଠୁଳହେବାକୁ ଲଗିଲା । ଜାପାନୀ ମନ୍ତ୍ରୀ ଟାନାକା ୧୯୨୭ରେ ଏକ ସ୍ମାରକପତ୍ରରେ ଜାପାନର ପୃଥିବୀ ବିଜୟ ପରିକଳ୍ପନାର ଏକ ଆଭାସ ଦେଇଥିଲେ । ସେ ଲେଖିଥିଲେ, "ପୃଥିବୀ ଜୟ କରିବା ପାଇଁ ପ୍ରଥମେ ଏସିଆକୁ ଜୟ କରିବାକୁ ପଡ଼ିବ । ଏସିଆ ଜୟ ପାଇଁ ଚୀନ ଦଖଲ ଦରକାର, ଚୀନ ଦଖଲ ପାଇଁ ମାଞ୍ଚୁରିଆ ଓ ମାଙ୍ଗୋଲିଆ ଜୟ କରିବାକୁ ପଡ଼ିବ, ଏବଂ ମାଞ୍ଚୁରିଆ ଓ ମଙ୍ଗୋଲିଆର ଦଖଲ ସକାଶେ ପ୍ରଥମେ ଫର୍ମୋଜା ଓ କୋରିଆକୁ ଦଖଲ କରିବା ଆବଶ୍ୟକ ।" ଜାପାନୀ

ସାମ୍ରାଜ୍ୟବାଦୀମାନେ ଏହି 'ଟାନାକା ଯୋଜନା'କୁ କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିଥିଲେ । ବର୍ତ୍ତମାନ ଜାପାନର ପରାଜୟ ପରେ ଜାପାନରେ ଯୁଦ୍ଧଘାଟି ନିର୍ମାଣ କରୁଥିବା ଆମେରିକାର ଡୋଲାର-ପତିମାନେ ଏହି 'ଟାନାକା ଯୋଜନା'କୁ କାର୍ଯ୍ୟକାରୀ କରିବାକୁ ବସିଛନ୍ତି ।

ଯୁଦ୍ଧର ପ୍ରଥମ ଅବସ୍ଥାରେ ଆମେରିକା ସୈନ୍ୟମାନଙ୍କର ଶୋଚନୀୟ ପରାଜୟ ଘଟିଲା ଏବଂ କୋରିଆବାସୀ 'ଗୁକ୍'ଙ୍କ ଦ୍ୱାରା କୋରିଆର ଅଧିକାଂଶ ଅଞ୍ଚଳରୁ ଆମେରିକାର ବୀରମାନେ ବିତାଡ଼ିତ ହୋଇ ପୁସନ୍ ବନ୍ଦରର ଏକ ସଙ୍କୀର୍ଣ୍ଣ ଅଞ୍ଚଳରେ ଅବଦ୍ଧ ହେଲେ । ସେତେବେଳେ ଆମେରିକାର ଭୂମଧ୍ୟସାଗରରେ ଥିବା ସମସ୍ତ ଯୁଦ୍ଧଜାହାଜକୁ ଆଣି ପ୍ରଶାନ୍ତ ମହାସାଗରରେ ଥିବା ବିରାଟ ନୌବାହିନୀ ସହିତ ଯୋଗ କରି, ଗତ ମହାଯୁଦ୍ଧରେ ଉତ୍ତରଆଫ୍ରିକା ଅଭିଯାନବେଳେ ଆମେରିକା ଯେତେ ଅସ୍ତ୍ରଶସ୍ତ୍ର ସୈନ୍ୟସରଞ୍ଜାମ ବ୍ୟବହାର କରିଥିଲା, ତାହାଠାରୁ ଢେର ବେଶୀ ସୈନ୍ୟସରଞ୍ଜାମ ବ୍ୟବହାର କରି କ୍ଷୁଦ୍ର କୋରିଆଦେଶକୁ ଡୋଲାର ଦୈତ୍ୟ ଗିଳିଦେବାକୁ ଉଦ୍ୟମ କଲା । ଶତ୍ରୁର ଏହି ବିରାଟ ଅଭିଯାନର ସମ୍ମୁଖୀନ ହେବାପାଇଁ କୋରିଆସୈନ୍ୟ ତାଙ୍କର ଯୁଦ୍ଧକୌଶଳ ବଦଳାଇ ଦେଲେ । ଉତ୍ତରକୋରିଆ ସରକାର ଅଧିକାଂଶ ସୈନ୍ୟ-ସରଞ୍ଜାମ ଉତ୍ତରର ଏକ ନିରାପଦ ଅଞ୍ଚଳକୁ ଉଠାଇନେଲେ, ଏବଂ ବଳକା ସୈନ୍ୟଙ୍କୁ ଛୋଟ ଛୋଟ ଗରିଲା ବାହିନୀରେ ପରିଣତ କରି ଗାଁଗହଳ ଓ ପାହାଡ଼ଜଙ୍ଗଲରେ ଅଣ୍ଡା ନେଇ ଖଣ୍ଡଯୁଦ୍ଧ ଚଳାଇବା ପାଇଁ ସ୍ଥିର କଲେ । ବିଜୟଗର୍ବରେ ଉନ୍ମତ୍ତ ହୋଇ ଆମେରିକା-ସୈନ୍ୟ ଉତ୍ତରକୋରିଆକୁ ଧସେଇପଶିଲେ । ଅତି ପରିଷ୍କାର ଭାବରେ ଜଣାପଡ଼ିଲା, କେବଳ ଦକ୍ଷିଣକୋରିଆରୁ ଉତ୍ତରକୋରିଆ ସୈନ୍ୟଙ୍କୁ

ନିକାଲିଦେବା ପାଇଁ ଅମେରିକା ସରକାର କୋରିଆଯୁଦ୍ଧରେ ଯୋଗ ଦେଇଥିଲେ, । ତାଙ୍କର ଲକ୍ଷ୍ୟ ଥିଲା, ସମଗ୍ର କୋରିଆକୁ ଦଖଲ କରି କୋରିଆ ସୀମାନ୍ତ ୟାଲୁନଦୀର ବିଦ୍ୟୁତ ଯୋଜନାକୁ ମଧ୍ୟ ଅଧିକୃତ କରିବେ, ମଞ୍ଚୁରିଆର ଦ୍ୱାରଦେଶରେ ଗାଡ଼ମାଡ଼ି ବସିବେ । ବ୍ରିଟେନ୍ ପ୍ରଭୃତି କେତେକ ଦେଶ ଚୀନର ସନ୍ଦେହ ମୋଚନ କରିବାପାଇଁ ପ୍ରସ୍ତାବ କଲେ, 'ମିତ୍ରଶକ୍ତି ବାହିନୀ' ମଞ୍ଚୁରିଆ ସୀମାନ୍ତକୁ ଯିବେ ନାହିଁ । ୟାଲୁନଦୀଠାରୁ ଦୂରରେ ରହିବେ । କିନ୍ତୁ ଅମେରିକା ସେନାନାୟକମାନେ କୌଣସି ଉପଦେଶ ପ୍ରତି ଭ୍ରୂକ୍ଷେପ ନ କରି ମଞ୍ଚୁରିଆ ସୀମାନ୍ତ ଯାଏ ସୈନ୍ୟ ଚାଳନା କଲେ ।

ଚୀନର ପଡ଼ୋଶୀ, ବହୁଶତାବ୍ଦୀରୁ ଚୀନ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ କୋରିଆଦେଶକୁ ବିଦେଶୀ ସାମ୍ରାଜ୍ୟବାଦୀ ସେନା ଦଖଲକରି ମଞ୍ଚୁରିଆ ଦ୍ୱାରଦେଶରେ ପହଞ୍ଚିଗଲେ ଏବଂ ମଞ୍ଚୁରିଆରେ ଶିଳ୍ପ କାରଖାନାମାନଙ୍କୁ ବିଦ୍ୟୁତଶକ୍ତି ଯୋଗାଉଥିବା ୟାଲୁନଦୀ ବିଦ୍ୟୁତ୍ ଯୋଜନାର ମଧ୍ୟ ନିକଟବର୍ତ୍ତୀ ହୋଇଗଲେ । ଏହା ଚୀନର ଜନସାଧାରଣଙ୍କ ମନରେ ସନ୍ଦେହ ଓ ଆଶଙ୍କା ସୃଷ୍ଟି କଲା । ଯେଉଁ ଅମେରିକାନ୍ ସାମ୍ରାଜ୍ୟବାଦୀମାନେ ବହୁଦିନରୁ ଚୀନକୁ ଦଖଲ କରିବାପାଇଁ ଉଦ୍ୟମ କରୁଥିଲେ, ଯେଉଁମାନେ ଚୀନର ଗୃହଯୁଦ୍ଧରେ ହସ୍ତକ୍ଷେପ କରି ଚ୍ୟାଙ୍ଗକାଇଶେକ୍‌କୁ କୋଟି କୋଟି ଡଲାର୍ ସାହାଯ୍ୟ କରୁଥିଲେ, ଚ୍ୟାଙ୍ଗ୍‌ର ପରାଜୟ ପରେ ଯେଉଁମାନେ ଚୀନର ଗଣତନ୍ତ୍ର ସରକାରକୁ ସ୍ୱୀକାର ନ କରି ଫର୍ମୋଜା ଦ୍ୱୀପରେ ଚ୍ୟାଙ୍ଗ୍‌କୁ ଅସ୍ତ୍ରଶସ୍ତ୍ର ଯୋଗାଇବାରେ ବ୍ୟସ୍ତ ଏବଂ ଯେଉଁମାନେ କୋରିଆଯୁଦ୍ଧରେ ହସ୍ତକ୍ଷେପ କରିବା ସଙ୍ଗେ ସଙ୍ଗେ ଚୀନର ଫର୍ମୋଜା ଦ୍ୱୀପକୁ ଅବରୋଧ କରିଛନ୍ତି, ଚୀନଜନତାର ନୈତିକତା ଭାଙ୍ଗିବାପାଇଁ ମଞ୍ଚୁରିଆ ଅଞ୍ଚଳରେ ଘନଘନ ବୋମା

ଦର୍ଶନ କରୁଛନ୍ତି, ସେମାନେ ଚୀନର ଦ୍ୱାରଦେଶ କୋରିଆ ଦଖଲ କରିନେବା ଚୀନର ସ୍ୱାଧୀନତା ପକ୍ଷେ ଏକ ମହାବିପଦ, ଏହା ସ୍ୱାଧୀନତାପ୍ରେମୀ ଚୀନବାସୀ ବୁଝିପାରିଲେ । କୋରିଆରୁ ଅମେରିକା ସେନାଙ୍କୁ ହଟାଇବା ପାଇଁ, ଅମେରିକାର 'ଡାନାଲା ପରିକଳ୍ପନା'କୁ ବିଫଳ କରିଦେବା ସଙ୍କାଶେ ଚୀନର ସହସ୍ର ସହସ୍ର ଯୁବକ ସ୍ୱେଚ୍ଛା ସେବକ ହୋଇ କୋରିଆ ମୁକ୍ତି-ବାହିନୀକୁ ସାହାଯ୍ୟ ଦେବାଲାଗି ବାହାରି ପଡ଼ିଲେ । ବିଲାତର 'ମାନଚେଷ୍ଟର ଗାର୍ଡିଏନ୍' କାଗଜର ବର୍ଣ୍ଣନା ଅନୁସାରେ ଚୀନସ୍ୱେଚ୍ଛାସେବକଙ୍କର କୋରିଆଯୁଦ୍ଧରେ ସହଯୋଗ ଅମେରିକା ସୈନ୍ୟଙ୍କ ମନରେ ଏପରି ଆତଙ୍କ ସଞ୍ଚାର କଲା ଯେ ସେମାନେ ନିଜ ହାତହତିଆର ଛାଡ଼ିଦେଇ, ନିଜର ସହଯୋଗୀମାନଙ୍କୁ ବିପଦରେ ପକାଇ ଯୁଦ୍ଧଭୂମିରୁ ଦୌଡ଼ ପଳାଇବାକୁ ଲାଗିଲେ । ଯୁଦ୍ଧରେ ଆମେରିକାର ଘୋର ପରାଜୟ ଘଟିଲା । ବହୁ ଅସ୍ତ୍ରଶସ୍ତ୍ର ସୈନ୍ୟସରଞ୍ଜାମ କୋରିଆ ମୁକ୍ତି ବାହିନୀ ଜବତ କଲେ । ଅମେରିକା ସୈନ୍ୟ ଉତ୍ତର କୋରିଆ ଛାଡ଼ି ଦକ୍ଷିଣ କୋରିଆକୁ ପଳାଇବାକୁ ଲାଗିଲେ । ସେଠାରେ ସେମାନେ କେତେକ ସମୟ ବିଶ୍ରାମନେଇ ଭବିଷ୍ୟତ ଅଭିଯାନ ପାଇଁ ନିଜକୁ ପୁନର୍ଗଠିତ କରିବାର ଅଭିଳାଷ ପୋଷଣ କରିଥିଲେ ଏବଂ ଏହି ଅଭିଳାଷ ଅମେରିକାର ବହୁ ସମର ବିଶାରଦଙ୍କ ମୁହଁରେ ପ୍ରକାଶ ପାଇଥିଲା । କିନ୍ତୁ କୋରିଆର ଜନବାହିନୀ ସେମାନଙ୍କୁ ବିଶ୍ରାମ ଦେବାକୁ ପ୍ରସ୍ତୁତ ନ ଥିଲେ । ଅମେରିକା ସୈନ୍ୟଙ୍କୁ କୋରିଆ ଦେଶରୁ ବିତାଡ଼ିତ କରିବାପାଇଁ ସେମାନେ ଲାଗିପଡ଼ିଲେ ।

ଅମେରିକାର ସାମ୍ରାଜ୍ୟବାଦୀମାନେ କୋରିଆ ସମସ୍ୟାର ଯଥାର୍ଥ ସମାଧାନ ଚାହୁଁ ନାହାନ୍ତି, ଏହା ବହୁକ୍ଷେତ୍ରରେ ପ୍ରମାଣିତ ହୋଇଛି । ନିରପେକ୍ଷଭାବରେ ଭାରତର ପ୍ରଧାନମନ୍ତ୍ରୀ ନେହେରୁ

ଯେଉଁ ସବୁ ଶାନ୍ତିପ୍ରସ୍ତାବ କରିଛନ୍ତି, ତାଙ୍କୁଲ୍ୟ ପ୍ରକାଶ କରି ଆମେରିକାର ସରକାର ସେ ସବୁ ଅଗ୍ରାହ୍ୟ କରିଛନ୍ତି । ଯୁଦ୍ଧର ପ୍ରଥମ ଭାଗରେ ଶ୍ରୀ ନେହେରୁ ପ୍ରସ୍ତାବ କରିଥିଲେ, କୋରିଆର ଶାନ୍ତି ପ୍ରଶ୍ନ ନିରାପତ୍ତା ପରିଷଦ ବୈଠକରେ ଗଣତାନ୍ତ୍ରିକ ଚୀନ ପ୍ରତିନିଧି ସମେତ ସମସ୍ତ ସ୍ଥାୟୀସଭ୍ୟଙ୍କ ଉପସ୍ଥିତିରେ ଆଲୋଚିତ ହେଉ । ଏହି ପ୍ରସ୍ତାବକୁ ସ୍ୱାଗତ କରି ମାର୍ଶାଲ ଷ୍ଟାଲିନ ଲେଖିଥିଲେ, ଏଥିଲା ସମସ୍ୟାର ସମାଧାନ ପାଇଁ କୋରିଆ ପ୍ରତିନିଧିଙ୍କ ମତ ମଧ୍ୟ ଶୁଣିବା ଉଚିତ । ପ୍ରଧାନମନ୍ତ୍ରୀ ନେହେରୁ ଷ୍ଟାଲିନଙ୍କ ଉତ୍ତରରେ ସନ୍ତୋଷ ପ୍ରକାଶ କରିଥିଲେ । କିନ୍ତୁ ଆମେରିକା ସରକାର ଏହି ପ୍ରସ୍ତାବକୁ ଅବାସ୍ତବ କହି ପ୍ରତ୍ୟାଖ୍ୟାନ କଲେ । ନେହେରୁ ଏହି ଧରଣର ଶାନ୍ତିପ୍ରସ୍ତାବ କରି ଆମେରିକାର ମୁଖା ଖୋଲି ଦେବାରୁ ଆମେରିକାର କାଗଜମାନେ ତାଙ୍କୁ କଦର୍ଯ୍ୟଭାବରେ ଭର୍ତ୍ସନା କରିବାକୁ ଲାଗିଲେ । ଚୀନର ସ୍ୱେଚ୍ଛା ସେବକମାନଙ୍କର କୋରିଆଯୁଦ୍ଧରେ ସହଯୋଗ ପରେ ଯେଉଁ ପରିସ୍ଥିତି ଉପୁଜିଲା, ତାହାକୁ ସୁଧାରିବା ପାଇଁ ଭାରତ ପ୍ରତିନିଧି ଶ୍ରୀ ବି, ଏନ୍, ରାଓ ମିଳିତଜାତିସଂଘରେ ଯେଉଁ ପ୍ରସ୍ତାବ ଆଗତ କଲେ, ତାହା ମଧ୍ୟ ଆମେରିକାର ତୀବ୍ର ପ୍ରତିରୋଧର ସମ୍ମୁଖୀନ ହେଲା । କିନ୍ତୁ ଗଣତାନ୍ତ୍ରିକ ଚୀନ ସେହି ପ୍ରସ୍ତାବକୁ ସ୍ୱାଗତ କରିଥିଲା । ଏକ ସାତଜଣିଆ କମିଟି କୋରିଆ ଶାନ୍ତିପ୍ରସ୍ତାବ ଆଲୋଚନା କରିବେ, ପ୍ରଥମ ବୈଠକରେ ଯୁଦ୍ଧବନ୍ଦର ସମସ୍ୟା ନିରୂପଣ ହେବ ଏବଂ ଫର୍ମୋଜାରୁ ଆମେରିକାର ଅବରୋଧ ଉଠାଇ ନେବା ଓ କୋରିଆରୁ ସମସ୍ତ ବୈଦେଶିକ ସୈନ୍ୟଙ୍କୁ ବାହାର କରିନେବା ଆଦି ପ୍ରଶ୍ନ ଏହି କମିଟି ଆଲୋଚନା କରିବେ । ଏହି ଯୁକ୍ତିଯୁକ୍ତ ପ୍ରସ୍ତାବ ଆମେରିକା ଅଗ୍ରାହ୍ୟ କଲା ଏବଂ ଅତି କଦର୍ଯ୍ୟଭାଷାରେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ଆମେରିକାର ସମ୍ବାଦପତ୍ରମାନେ

ଗାଳିଦେବାକୁ ଲାଗିଲେ । କୌଣସି ଏସିଅନ୍ ଜାତିର ସମର୍ଥନ ନପାଇ ମଧ୍ୟ ଚୀନକୁ ଆକ୍ରମଣକାରୀ ବୋଲି ଘୋଷଣା କରୁଥିବା ଆମେରିକାର ପ୍ରସ୍ତାବ ମିଳିତ ଜାତିସଂଘରେ ଗୃହୀତ ହେଲା । ଜାଣି ଜାଣି ଆମେରିକା ମିଳାମିଶାର ବାଟ ବନ୍ଦକରିଦେଲା ।

ଦୁନିଆର ଜନସାଧାରଣ ଯେ ଯୁଦ୍ଧବିରୋଧୀ, କୋରିଆ-ଯୁଦ୍ଧରୁ ଏହାର ଭୂରିଭୂରି ପ୍ରମାଣ ମିଳୁଛି । ସଭାପତି ଟ୍ରୁମାନ ଯେତେବେଳେ କୋରିଆ ଯୁଦ୍ଧରେ ପରମାଣୁବୋମା ପ୍ରୟୋଗ କରିବାର ଧମକ ଦେଲେ, ସାରାଦୁନିଆରେ ତୀବ୍ର ପ୍ରତିବାଦ ସ୍ୱର ଉଠିଲା, ଟ୍ରୁମାନ ଶଙ୍କିତ ହୋଇ ପଛଘୁଞ୍ଚା ଦେବାକୁ ବାଧ୍ୟହେଲେ । ମାକ୍ଆର୍ଥର କୋରିଅସୈନ୍ୟଙ୍କର ବିଦୀର୍ଣ୍ଣ ଶବକୁଣ୍ଡ ଦେଖି ଯେତେବେଳେ ବିଭୋର ହୋଇ କହିଲେ, "ମୋର ବୃଦ୍ଧଚକ୍ଷୁକୁ ଏହା ଆନନ୍ଦ ଦେଉଛି," ସେତେବେଳେ ସମଗ୍ର ଏସିଆ ଏକସ୍ୱରରେ ତୀବ୍ର ନିନ୍ଦାବାଦ କରିଥିଲା । କୋରିଆଯୁଦ୍ଧ ଏସିଆବାସୀଙ୍କୁ ଆମେରିକା-ବିରୋଧୀ କରିଛି । କୋରିଆଯୁଦ୍ଧ ଆମେରିକାକୁ ସାଧାରଣରେ ଅପ୍ରିୟ କରିଛି । ତାର ଅନୁଗତ ସରକାରମାନେ ମଧ୍ୟ କୋରିଆଯୁଦ୍ଧ ପାଇଁ ଉତ୍ସାହିତ ନୁହନ୍ତି । ଆମେରିକାର ଧନକୁବେରଙ୍କ ସକାଶେ ନିଜଦେଶମାନଙ୍କୁ ଯୁଦ୍ଧରେ ଭରତି କରିବା ପାଇଁ ସେମାନେ ଦୋଦୋପାଞ୍ଚ ହେଉଛନ୍ତି । ଆମେରିକାର ସୈନ୍ୟମାନେ ଯୁଦ୍ଧ କରିବାକୁ ଉତ୍ସାହିତ ହେଉ ନଥିବା ଆମେରିକାର ସମ୍ବାଦପତ୍ରମାନେ ସ୍ୱୀକାର କରିଛନ୍ତି । କୋରିଆଜାତିର ସ୍ୱାଧୀନତା ରକ୍ଷାପାଇଁ ଅପୂର୍ବ ବୀରତ୍ୱ, ଗଣତାନ୍ତ୍ରିକ ଚୀନର ଦୃଢ଼ତା ଏବଂ ଦୁନିଆର ଶାନ୍ତି ଆନ୍ଦୋଳନର ପ୍ରଭାବ ଯୁଦ୍ଧବାଦୀମାନଙ୍କର ଉଦ୍ଦେଶ୍ୟକୁ ବିଫଳ କରିଛି । କିନ୍ତୁ ଯୁଦ୍ଧବାଦୀମାନେ କୋରିଆରୁ ଯୁଦ୍ଧନିଆଁ ଅନ୍ୟତ୍ର ନେବାପାଇଁ ଚେଷ୍ଟିତ ଅଛନ୍ତି ।

ଯୁଦ୍ଧ ନା, ଶାନ୍ତି ଏହି ପ୍ରଶ୍ନର ଶେଷମୀମାଂସା ଜନତାର ଚେତନା ଉପରେ ନିର୍ଭର କରୁଛି । ଷ୍ଟାଲିନ୍‌ଙ୍କ ଉକ୍ତି ଅନୁସାରେ:— "ଯଦି ଜନତା ଶାନ୍ତିରକ୍ଷା ଉଦ୍ୟମକୁ ନିଜହାତକୁ ନିଅନ୍ତି ଏବଂ ଶାନ୍ତିରକ୍ଷା ପାଇଁ ଶେଷଯାଏ ଲଢ଼ନ୍ତି, ତାହାହେଲେ ଶାନ୍ତି ସୁରକ୍ଷିତ ଓ ସୁଦୃଢ଼ ହେବ । ଯଦି ଯୁଦ୍ଧଖୋରମାନେ ଜନସାଧାରଣଙ୍କୁ ମିଥ୍ୟାଜାଲରେ ଛନ୍ଦି ଦେଇପାରନ୍ତି, ସେମାନଙ୍କୁ ପ୍ରତାରଣା କରି ଏକ ନୂଆ ମହାଯୁଦ୍ଧ ଭିତରକୁ ଟାଣିନେବାରେ ସମର୍ଥ ହୁଅନ୍ତି, ତାହାହେଲେ ଯୁଦ୍ଧ ଅବଶ୍ୟମ୍ଭାବୀ ।"

---

ବ୍ରହ୍ମପୁର ଉତ୍କଳ ପ୍ରେସ୍‌ରେ, ଶ୍ରୀ ସିଂହାଦ୍ରି ପଣ୍ଡାଙ୍କ ଦ୍ୱାରା
ମୁଦ୍ରିତ ଓ ପ୍ରକାଶିତ

# ଲେଖକର ଅନ୍ୟବହି